# ଅଚ୍ୟୁତ ଠାରୁ ହାଡ଼ିଆଗାରୁ ମାଳିକାର ସମାଚାର



# ଅଚ୍ୟୁତ ଠାର
# ହାଡ଼ିଆ ଗାର
# ମାଳିକାର ସମାଚାର


ଲେଖକ, ବ୍ୟାଖ୍ୟାକାର, ପୋଥି ସଂଗ୍ରାହକ; ଦେବୀ
ଉପାସକ, ଭବିଷ୍ୟ ଦ୍ରଷ୍ଟା, ଯୋଗମାୟା ସେବକ
ସିଦ୍ଧଯୋଗୀ—ଶ୍ରୀମଦ୍ ଅରକ୍ଷିତ ଭଞ୍ଜ ବାବା



ପ୍ରକାଶକ ଓ ପ୍ରାପ୍ତିସ୍ଥାନ
**ସରସ୍ୱତୀ ବିଦ୍ୟା ଭଣ୍ଡାର**
ବାଦାମବାଡ଼ି, କଟକ-୯
ଫୋନ୍-୦୬୭୧-୨୩୧୦୮୨୦

# ଅଚ୍ୟୁତ ଠାରୁ ହାଡ଼ିଆ ଗାରୁ ମାଳିକାର ସମାଚାର




ଲେଖକ : **ଶ୍ରୀମଦ୍ ଅରକ୍ଷିତ ଭଞ୍ଜ ବାବା**
ସେବକ-ଦେବୀ ଯୋଗମାୟା ପୀଠ, ବିରୂପା କ୍ଷେତ୍ର ଦେକୁରୀ,

ପୋ-ବେଣୀପୁର, ଭାୟା-ଚାରିନଙ୍ଗଳ,
ଜି-ଯାଜପୁର, ପିନ୍-୭୫୪୨୯୨
ମୋ : ୯୨୩୮୯୧୯୫୦୨



ପ୍ରକାଶକ ଓ ପ୍ରାପ୍ତିସ୍ଥାନ : **ସରସ୍ୱତୀ ବିଦ୍ୟା ଭଣ୍ଡାର**
ବାଦାମବାଡ଼ି, କଟକ-୯
ଫୋନ୍ : ୨୩୧୦୮୨୦ (ଦୋକାନ)

୯୮୬୧୧୭୧୭୮୭ (ମୋ)

ପରିମାର୍ଜିତ ନୂତନ ସଂସ୍କରଣ : ୨୦୧୨



ପ୍ରଚ୍ଛଦ ପଟ : ଶ୍ରୀ ଗୋବିନ୍ଦ ଚନ୍ଦ୍ର ମହାନ୍ତି



ଡି.ଟି.ପି ଓ ମୁଦ୍ରଣ : **ମା' ତାରିଣୀ ପ୍ରିଣ୍ଟର୍ସ**
ରାଜାବଗିଚା, କଟକ-୯
ଫୋନ୍ ନଂ-୯୮୫୩୨୩୧୫୮୬



ମୂଲ୍ୟ : କୋଡ଼ିଏ ଟଙ୍କା ମାତ୍ର

# ସୂଚୀପତ୍ର

| ବିଷୟ | ପୃଷ୍ଠା |
|---|---|

| ବିଷୟ | ପୃଷ୍ଠା |
|---|---|





# ପ୍ରଥମ ପରିଚ୍ଛେଦ

## ଆଗତ ଅନନ୍ତଯୁଗ ପାଇଁ ମହାମନ୍ତ୍ର

''ହରେ କଲ୍କୀ ହରେ କଲ୍କୀ
କଲ୍କୀ କଲ୍କୀ ହରେ ହରେ ।
ହରେ ଅନନ୍ତ ହରେ ଅନନ୍ତ
ଅନନ୍ତ ଅନନ୍ତ ହରେ ହରେ ।''

''ଏଇ ମହାମନ୍ତ୍ରଟିକୁ ଗୋପୀ-ଗୋପାଳ ଓ ଭକ୍ତବୃନ୍ଦ ସନ୍ଧ୍ୟା ସକାଳେ ଭଜନ ପରି ଗାନ କରନ୍ତୁ, କଳି ଦେବତାଙ୍କର ମଣିଷ ମାରଣ ଯୋଜନାରୁ ଓ ଷଡ଼ଯନ୍ତ୍ରରୁ, ଅର୍ଥାତ୍ ସଙ୍କଟରୁ ରକ୍ଷା ପାଇବା ସଙ୍ଗେ ସଙ୍ଗେ, ମାନସିକ ଶାନ୍ତି ପ୍ରାପ୍ତି ହୁଅନ୍ତୁ''—ଏଇଟି ଦେବୀ ଯୋଗମାୟାଙ୍କର କଣ୍ଠରୁ ନିସୃତ ହୋଇଅଛି ।

''ଯେଉଁମାନେ ଭଜନ କରିବେ, ସୁଫଳ ପାଇବେ ନିଶ୍ଚୟ । କଳିଯୁଗ ହଟିଯାଉଛି । ନୂତନ ଯୁଗର ପ୍ରାରମ୍ଭ ହେଉଛି । ଅନନ୍ତ ଯୁଗଟି ଦ୍ୱାର ଦେଶରେ ଆସି ଉପସ୍ଥିତ ହେଲାଣି । ଏହି ଯୁଗରେ ସୁଖ ଶାନ୍ତି ଆନନ୍ଦ ପାଇବେ, ପ୍ରାଣୀ ଜଗତ ।''

କଳିଯୁଗ ପାଇଁ ''ହରେ ରାମ ହରେ ରାମ ରାମ ରାମ ହରେ ହରେ, ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ କୃଷ୍ଣ ହରେ ହରେ'' ମହାମନ୍ତ୍ରଟି ଥିଲା ଭଜନ ପାଇଁ । ଯେହେତୁ କଳିଯୁଗ ଭୋଗ ସରିଲା, ନୂତନ ଯୁଗ ଆସିଲା, ସେଇପରି ନୂତନ ନାମ ଓ ନୂତନ ମହାମନ୍ତ୍ର ଆସିଲା ।

ରାମ, କୃଷ୍ଣ ଓ କଲ୍କୀ ୩ ଯୁଗ ପାଇଁ ୩ଟି ଅବତାର ପୁରୁଷ, ଅର୍ଥାତ୍ ମୁଖ୍ୟ ଲୀଳାବତାର ଭାବେ ଜନ୍ମଗ୍ରହଣ କରିଥାନ୍ତି ଲୀଳାଖେଳା ପାଇଁ । ସୃଷ୍ଟି ଆରମ୍ଭରୁ କେତୋଟି ସତ୍ୟ, ତ୍ରେତା, ଦ୍ୱାପର, କଳି ଓ ଅନନ୍ତଯୁଗ ଭୋଗ ହୋଇଗଲାଣି, ଏହାର ହିସାବ ଆଜିଯାଏ କେହି ରଖିପାରି ନାହାନ୍ତି ।

ବର୍ଷକରେ ୬ଟି ଋତୁ ଆସିଥାଏ । ଯେଉଁ ଋତୁରେ ଯେଉଁ ପ୍ରକାର ପୁଷ୍ପ ଫୁଟିବାରେ ଥାଏ, ସେଇ ପ୍ରକାର ବା ସେଇ ଜାତିର ପୁଷ୍ପ ଉଦ୍ୟାନରେ ଦୃଷ୍ଟି ହୁଏ । ଶୀତ ଋତୁରେ ଫୁଟୁଥିବା ଫୁଲ, ଗ୍ରୀଷ୍ମ ଋତୁରେ ଫୁଟି ନଥାଏ ବା ଗ୍ରୀଷ୍ମ ଋତୁରେ ଖୋଜିଲେ ଶୀତ ଋତୁର ଫୁଲ ମିଳେନା ଯେପରି, ଠିକ୍ ଏଇ ଋତୁଚକ୍ର ପରି ପ୍ରତି ଯୁଗକୁ ତୁଳନା କରାଯାଇପାରେ ।

ଠିକ୍ ଏହି ଉଦାହରଣ ପରି ଏହି ମହାମନ୍ତ୍ର ପ୍ରସଙ୍ଗଟିକୁ ବୁଝାଯାଇପାରେ । ଯୁଗ ବଦଳିଲେ ମଣିଷ ବଦଳିଯାନ୍ତି । ସେହିପରି ମନ୍ତ୍ର ମଧ୍ୟ ବଦଳିଗଲା । ଏକ ମନ, ଏକ ଧ୍ୟାନ, ଏକ ଲୟରେ ଗାଇଲେ ଶାନ୍ତି ମିଳିବ ଆତ୍ମାକୁ ।



## 'ଅଭେଦ କବଚ' ଜଣାଣଟିକୁ ବାରମ୍ବାର ଆବୃତ୍ତି କଲେ ବାଞ୍ଛିତ ଫଳପ୍ରାପ୍ତି ହେବ ।

ଗୋପୀ ଓ ଗୋପାଳ, ଭକ୍ତବୃନ୍ଦ ସମସ୍ତଙ୍କ ପାଇଁ ଏଇଟିକୁ ସନ୍ଧ୍ୟା ସମୟେ ପଢ଼ିବା ଉଚିତ୍—

ଶ୍ରୀଅଚ୍ୟୁତ ଦାସ ଭଜେ ପୀତବାସ ଗୋବିନ୍ଦ ଗୋପାଳ ହରି ।
ମହୋଦଧି କୂଳେ କଳ୍ପବଟ ମୂଳେ ଦାରୁବ୍ରହ୍ମ ରୂପ ଧରି ।୧।
ବିଜେ କରିଅଛ ନୀଳାଚଳ ମଧ୍ୟେ ଅନନ୍ତ ମୂରତି ଧରି ।
ସଙ୍ଗେ ଶେଷ ଫଣୀ ସୁଭଦ୍ରାଙ୍କୁ ଘେନି ସାନୁଜ ଅପେ ଶ୍ରୀହରି ।୨।
ଦ୍ୱାପର ଯୁଗ ହୋଇବାର ଭୋଗ ଦ୍ରୌପଦୀ ମାନ ଫେଡ଼ିଲ ।
ଗୋପାଳଙ୍କ ସଙ୍ଗେ ଗୋପଲୀଳା ରଙ୍ଗେ ନାନା ରଙ୍ଗରେ ଖେଳିଲ ।୩।
କଂସ କେଶି ନାଶି ଅଷ୍ଟମଲ୍ଲ ଧ୍ୱଂସି ପାଣ୍ଡବଙ୍କୁ ଦେଲ ବଳ ।
ଅଚ୍ୟୁତ ଯେ ଦାସ ଭଜେ ପୀତବାସ ବିଜୟେ ଲବଣ କୂଳ ।୪।
ସୁଦୟା କର ମନତାପ ହର ଅନୁଗ୍ରହ କର ହରି ।
ପାଦପଦ୍ମ ଠାବ ବିନୁ ଅନ୍ୟ ଭାବ ନ ପାରିବି ମନେ ଧରି ।୫।

କେବଳ ମାତ୍ରକ ହଜିବ ଗାତ୍ରକ ଉଦଧି ଲବଣ କୂଳ
ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ମୂଳ ସମ୍ପୂର୍ଣ୍ଣ ହୋଇବ ତୁଳ ।୬।
ନେମାଳ ଯେ ଗ୍ରାମ ପଦ୍ମବନ ଧାମ ଚିତ୍ରୋତ୍ପଳାର ତୀର
ଅଚ୍ୟୁତ ଯେ ଦାସ ଏତେକଇ ଆଶ ଲୁଚିବ ଦେହ ଯେ ମୋର ।୭।
ପଦ୍ମବନ ମଧ୍ୟେ କାୟା ମୋ ହଜିବ କରିଅଛି ବଡ଼ ଆଶ
ଅଚ୍ୟୁତ ଭଜେ ପୀତବାସ ଜନ୍ମେ ଜନ୍ମେ ନିଜ ବାସ ।୮।
ଜୟ ଜଗନ୍ନାଥ ରମାଦେବୀ କାନ୍ତ ଭକତ ବତ୍ସଳ ହରି
ବୁଦ୍ଧ ଶରୀର କଳ୍କୀ ଅବତାର ଦାରୁବ୍ରହ୍ମ ରୂପ ଧରି ।୯।
ଶଙ୍ଖଚକ୍ର କର ଗଦା ଅସିବର ଶକତି ସ୍ୱରୂପ ଚିହ୍ନ
ଅଚ୍ୟୁତ ଯେ ଦାସ ପୂର୍ବ ପରକାଶ କରଇ ନିଗମ ବର୍ଣ୍ଣ ।୧୦।
ଶ୍ରୀହରି ସୁମରି ମନ୍ତ୍ରରାଜ ଧରି ଅଙ୍ଗ ଗୋଟି କର ନ୍ୟାସ
କହିଥିଲେ ଯାହା ଆପେ ଜଗୁନାହା ରୂପ ଗୋଟି ବେଦବ୍ୟାସ ।୧୧।
ବେଦବ୍ୟାସ ବନ୍ଧ ଅନୁଷ୍ଟପ ଛନ୍ଦ ଶ୍ରୀକୃଷ୍ଣ ଦେବତା ଧରି
ଆଦ୍ୟା ଶେଷ ଶକ୍ତି ଅଟେ ସେ ପ୍ରକୃତି ନିଷ୍ଠଳେ ଆସନ କରି ।୧୨।
ଶ୍ରୀଜଗନ୍ନାଥ ବେଣୁଧର ହାତ ଯେମନ୍ତ ରୂପକୁ ଧ୍ୟାନ
ଓଁକାର ସୁମରି ପଞ୍ଚମନ ଧରି ପ୍ରଥମେ ଉଚ୍ଚାରି ନାମ ।୧୩।
ଶ୍ରୀ ପରଂବ୍ରହ୍ମ ଓଁକାର ନାମ ନମଃକୁ ଅନ୍ତରେ ଦେବ
ଚତୁର୍ଦ୍ଦଶାକ୍ଷର ଯେହ୍ନୁ ମନ୍ତ୍ରବର ନିମିଷେ ଅନ୍ତ ଧରିବ ।୧୪।

ଚତୁର୍ଦ୍ଦଶାକ୍ଷର ମନ୍ତ୍ରଟି ହେଉଛି—"ଓଁ ନମୋ ଭଗବତେ ବାସୁଦେବାୟଃ ନମଃ ।"

ଓଁକାର ହୃଦ ଧରିବାକୁ ମଧ ଅକାର ଶିରରେ ଦେବ
ବାୟୁର ମଣ୍ଡଳ ନାସିକାର ସ୍ଥଳ ଆକାର ନିବାସ ହେବ ।୧୫।
ମୁଖରେ ନିରୋଧ ଉକାର ମଧ ଏକାର ନୟନେ ଦେଇ
ଇ କାର ସ୍ଥାନ ମହାବଳୀ କର୍ଣ୍ଣ ବେନି ସଂପୁଟରେ ନେଇ ।୧୬।

ପ କାର ଦକ୍ଷିଣ ଭୂଜରେ ବସାଣ ର କାର ବାମ ଭୁଜରେ
ମ କାର ପୃଷ୍ଠଭାଗକୁ ଘେନିଣ ବରକାର ପାରୁଶରେ ।୧୭।
ହ କାର ନାଭି ମଣ୍ଡଳେଣ ଥିବ ମ କାର କାମ ମଣ୍ଡଳେ
ନ କାର ବେନି ଜାନୁ ମଧ୍ୟେ ଘେନି ମ କାର ପାଦର ମୂଳେ ।୧୮।
ଓଁ କାର ଲଲାଟ ମଧ୍ୟଭାଗ ତଟ ଏମନ୍ତ ମନ୍ତ୍ର ସୁମର
ଜଗନ୍ନାଥ ରୂପ ଦାରୁବ୍ରହ୍ମ ରୂପ ମନ୍ତ୍ରକୁ ମନରେ ଧର ।୧୯।
ମୁଖରେ ଉଚ୍ଚାର ମନ୍ତ୍ରରେ ପ୍ରଚାର ରଖିବେ ଗୋକୁଳ ନାଥ
ଦକ୍ଷିଣ ଭୂଜ ଦେବାଧିବ ରାଜ ରଖିବେ ଦୁର୍ଗମ ପଥ ।୨୦।
ବାମ ଭୂଜ ଦେବ ବାମନ ରଖନ୍ତୁ ହୃଦୟ ରଖନ୍ତୁ ହରି
ଚଉବର୍ଗ ଦାତା ଚିତ୍ତ ମୋ ରଖନ୍ତୁ ନାଭି ରଖନ୍ତୁ ମୁରାରୀ ।୨୧।
କଣ୍ଠକୁ କଂସାରୀ ଅନ୍ତର ଶରୀରୀ ରଖନ୍ତୁ ମୁଖକୁ ଶ୍ୟାମ
ନାସାକୁ ଗରୁଡ଼ାସନ ରଖନ୍ତୁ କର୍ଣ୍ଣକୁ ରଖନ୍ତୁ ରାମ ।୨୨।
କପାଳ କୈଟଭ ଅନ୍ତକୁ ରଖନ୍ତୁ ଶିର ରଖନ୍ତୁ ଅନନ୍ତ
କମଳଲୋଚନ କେଶକୁ ରକ୍ଷଣ ନୃସିଂହ ରଖନ୍ତୁ ଦାନ୍ତ ।୨୩।
ବକାସୁର ଯେହୁ ନିବାରକ ସେହୁ ରଖିବେ ମୋହର ନଖ
ଅନ୍ତର୍ଯ୍ୟାମୀ ବୋଲି ନାମ ଗୋଟି ଯାର ସେହୁ ରଖିବେ ମୋ ପାଖ ।୨୪।
ଶ୍ରୀକୃଷ୍ଣ ରସନା ନିଶ୍ଚଳେ ରକ୍ଷଣା ମୁକୁନ୍ଦ ରକ୍ଷଣ ମନ
ଚିତ୍ତକୁ ଚଞ୍ଚଳାପତି ରକ୍ଷା କରୁ ଜାନୁକୁ ବିଶିକେସନ ।୨୫।
ଆଣ୍ଠୁକୁ ରକ୍ଷଣ ବୈକୁଣ୍ଠ ପାଳକ କଟି ରଖ କଳ୍ପତରୁ
ପାଦ ବେନି ମୋର ପଦ୍ମନାଭ ରଖ ଦୁର୍ଗାକାନ୍ତ ଦୁର୍ଗମରୁ ।୨୬।
ଅର୍ଦ୍ଧଭାଗକୁ ତ ରଖନ୍ତୁ ଅଚ୍ୟୁତ ଉର୍ଦ୍ଧେ ରଖ ମଧୁହାରୀ
ସଂଗ୍ରାମ ମଧ୍ୟେକ ଶଙ୍କର୍ଷଣ ରଖ ବଚନକୁ ରାବଣାରୀ ।୨୭।
ଜଳ ମଧ୍ୟୁ ରଖ ଜଗନ୍ନାଥ ସ୍ଥଳେ ରଖ ଚାପଧାରୀ
ଅଗ୍ନି ମଧ୍ୟରୁ ଆଦିନାଥ ରଖନ୍ତୁ କେଶବ କଷ୍ଟ ନିବାରି ।୨୮।

ଚାଲନ୍ତେ ଚାଣୁରମର୍ଦ୍ଦନ ଉଦ୍ଧାର ଦିବ୍ୟସିଂହ ରଖ ନିଦ୍ରାରୁ
ଦିବସରେ କୃପାସିନ୍ଧୁ ରଖିଥିବ ଭୃଗୁ ଛେଦ ଭୟାଙ୍କରୁ ।୨୯।
ରାତ୍ରରେ ଅର୍ଜ୍ଜୁନ ସଖା ପ୍ରିୟକାରୀ ସର୍ବଦା ରଖିବେ ମୋତେ
ଯୋଗ ଆମନେ ଯୋଗେଶ୍ୱର ରଖନ୍ତୁ ଭୋଜନେ ରଖ ବିଶ୍ରାନ୍ତେ ।୩୦।
ବସନ୍ତେ ବଳିମଣ୍ଡନ ରଖନ୍ତୁ ଉଭୟେ ରଖ କଂସାରୀ
ରଜ ଭୟୁଁ ରତ୍ନାକର ସେ ରଖନ୍ତୁ କମ୍ବୁକର ଭବୁଁ ପାରି ।୩୧।
ଚୋରର ଭୁୟୁଁ ଚିନ୍ତାମଣି ସେ ରଖନ୍ତୁ ବ୍ୟାଘ୍ର ମୁଖୁଁ ବାସୁଦେବ
ସର୍ପ ମୁଖୁଁ ଶେଷଦେବ ରକ୍ଷାକର ଶତ୍ରୁ ଭୟରୁ ପ୍ରାଭବ ।୩୨।
ବାଣ ସିଂହାରକୁ ଜ୍ଞାନ ଆଦି ଯେତେ ଛଟକ ନାଟକ ଘେନି
ଅଭୟ ନୃସିଂହ ଉଦ୍ଧରିଣ ରଖ ଶିର ପାଦ ଯେ ମୃଧନି ।୩୩।
ରାମ ଯେ ଗୋବିନ୍ଦ ଶ୍ରୀହରି ମୁକୁନ୍ଦ ପରମାନନ୍ଦ ମୁରାରୀ
ପଦ୍ମଲୋଚନ ଶ୍ରୀକୃଷ୍ଣ ଶ୍ୟାମ ନାମ ଶଙ୍ଖ ଚକ୍ର ବେଣୁଧାରୀ ।୩୪।
ରଖିବେ ଅନନ୍ତ ସର୍ବ ଯେ ସିଦ୍ଧାନ୍ତ ବିବାଦ ବାଦ ମଧରେ
ଅଭେଦ କବଚ ନାମ ଭଗବନ୍ତ ରଖିବେ ନିତ୍ୟେ ସନ୍ଧ୍ୟାରେ ।୩୫।
ଶୁଣିଲେ ବିପତ୍ତି ନାଶିବ ଦୁରିତ ସଙ୍କଟୁଁ ହୋଇବପାର
ଶୁଣିଲେ ବନ୍ଧନମାନ ଯେ ନାଶିବ ବିପଦୁଁ ହୋଇବ ପାର ।୩୬।
ଶାଙ୍କୋଳି ଫିଟିବ ଦୁର୍ଗତି ତୁଟିବ ବଦନେ ଶୁଣିବ ଯେବେ
ବାଞ୍ଛିଲାର ଫଳ ହୋଇବ ସୁଫଳ ପକ୍ଷୟେ ପଢ଼ିବ ଯେବେ ।୩୭।
ଏକ ଦୁଇ ଛଡ଼ାକ୍ଷର କଷ୍ଟ ଯେତେ ସକଳ ହୋଇବ ନାଶ
ବଦନରେ ଗୁଣି କର୍ଣ୍ଣରେ ଯେ ଶୁଣି ସେବା ଥିବ ତା'ର ପାଶ ।୩୮।
ଡାକିଣୀ ସାଙ୍କିଣୀ ନାନା ରୋଗ ଘେନି ସକଳ ହୋଇବ ନାଶ
ତତ୍ତ୍ୱ ସତ୍ତ୍ୱ ଗୁଣ ଘେନି ସୁମନେଣ କହିଲୁଁଟି ରାମ ଦାସ ।୩୯।
ଶିଷ୍ୟଜନ ମଧ୍ୟେ ଶ୍ରେଷ୍ଠ ଅଟୁ ତୁହି କହିଲୁ ତୋ ଆଗେ ତେଣୁ
ଗୁପତ ଯେ କଥା ଅତି ଅବ୍ୟବସ୍ଥା ଭଣ୍ଡାରୁଁ ବୋଇଲୁଁ ଏଣୁ ।୪୦।

ଏହାର ଯେ ଭାବ ଏହୁ ସେ ଜାଣିବ ସକଳ ରସ ଲଭିବ
ତିନିଦିନରେଣ ପାଞ୍ଚଦିନେ ଅବା ଥରକେ ଯେହୁ ଗାଇବ ।୪୧।
ମନ୍ଦିରରେ ଥିବ ଦୁଃଖ ଯେ ହରିବ ଅଚଳ ସମ୍ପତ୍ତି ହେବ
ବଦନେ ଗୁଣିବ ଶ୍ରବଣେ ଶୁଣିବ ସୁଫଳେ ସେ ଦିନ ନେବ ।୪୨।
ସ୍ନେହ ଭୟ ଅବା ଭୋଗ ହିଁ କହିବା ନ କହିବୁ ବାବୁ ପଢ଼ି
ନିଶ୍ଚୟ ଯେ ଜ୍ଞାନ ଗୁପତରି ଧନ ହୃଦରେ ରଖିବୁ ଦୃଢ଼ି ।୪୩।
ଏ କଳିଯୁଗରେ ଗୁପତ କରିଣ ପାଠ ନ କରି ପ୍ରକାଶ
ବାଞ୍ଛାର ଫଳ ହେବ ଯେ ବିଫଳ ହେତୁ କର ରାମ ଦାସ ।୪୪।
ଶ୍ରୀ ବିଦ୍ୟାଧର ବେଣୁ ଶୋହେ କର ନମାମି କମଳା ପତି
ଅଭେଦ କଥନ ପୂର୍ଣ୍ଣ ଉଦ୍ଧାରଣ ଭଣିଲେ ଦୀନ ଅଚ୍ୟୁତି ।୪୫।

**ବୃନ୍ଦାବନରେ ଲୀଳା ସମୟ ଉପସ୍ଥିତ ହୁଅନ୍ତେ, ଜଣେ ଗୋପାଳ ଅନ୍ୟ ଜଣଙ୍କୁ କହିଥିଲେ—**

ଆସ ବୃନ୍ଦାବନକୁ ଯିବା
ନନ୍ଦ ପୁଅ ସଙ୍ଗେ ଖେଳ ଖେଳିବା
ନେବା ବତ୍ସା ଗାଈ ଉନ୍ମତ୍ତା ହୋଇ
ଯମୁନା ନଦୀରେ ସ୍ନାନ କରିବା
ଅଷ୍ଟଯେ ଗୋପାଳ ହୋଇଯିବା ମେଳ
ପଞ୍ଚସଖା ସଙ୍ଗେ କୃଷ୍ଣ ଦେଖିବା ।୧।
ରାମ ସଙ୍ଗେ କୃଷ୍ଣ ଦେଖିବା ଗୋଗୋଷ୍ଠ
ଗୋ-ଦୋହନ ତାଙ୍କ ସଙ୍ଗେ କରିବା ।୨।
କ୍ଷୀର ଦଧି ଲହୁଣୀ ଘୃତ ଛେନା ଘେନି
ମିଠା ଖଟା କଷା ଲବଣ ନେବା ।୩।
ପିତା ସଙ୍ଗ କରି ଭୁଞ୍ଜାଇବା ହରି
ଛଡ଼ ରସେ ତାଙ୍କ ମନ ତୋଷିବା ।୪।

ନାନା ରଙ୍ଗେ ସାଜି ମହା ବନଭୋଜି
ରାଜି କରି ତାଙ୍କ ମନକୁ ନେବା ।୫।
ସମସ୍ତ ଗୋପାଳ ହୋଇଯିବା ମେଳ
ଏକାକାର ଧର୍ମ ତହିଁ ରଚିବା ।୬।
କରି ସାଧୁ ସଙ୍ଗ ଛଡ଼ାଇବା ରଙ୍ଗ
ବାବାଜୀଙ୍କ ସଙ୍ଗେ ବାବାଜୀ ହେବା ।୭।
ଫୁଲଯେ ଚନ୍ଦନ ଧୂପ ଦୀପମାନ
ଆଲଟ ଚାମର ତାହାଙ୍କୁ ଦେବା ।୮।
ନାନା ବାଦ୍ୟ ବାଇ କୃଷ୍ଣ ନାମ ଗାଇ
ଦ୍ୱାଦଶ ବଚନରେ ରାସ କରିବା ।୯।
ରାମକୃଷ୍ଣ ନାଟ ତ୍ରିଭଙ୍ଗିଆ ଛାଣ୍ଡ
କହଇ ଅଚ୍ୟୁତି ନେତ୍ରେ ଦେଖିବା ।୧୦।

**ସରଳ ଭାବାର୍ଥ**—ଦ୍ୱାପର ଯୁଗ ଲୀଳା ସମୟେ, ଭକ୍ତମାନଙ୍କର ହୃଦୟର କଥାକୁ ବା ମନର ଭାଷାକୁ, ଗୀତି କବିତା ମାଧ୍ୟମରେ ସବୁ ତାଳପତ୍ର ପୋଥିରେ ଲେଖି ଦିଆଯାଇଥିଲା, କଳିଯୁଗର ଶେଷ ସମୟକୁ କାମରେ ଆସିବ ବୋଲି । କଳିଯୁଗ ଶେଷ ସମୟକୁ, ସମସ୍ତେ ମାୟା ମୋହରେ ପଡ଼ି ଛଟପଟ ହେଉଥିବେ, କାହାରି ମନକୁ ଆଧାତ୍ମିକ ଭକ୍ତି ଭାବନା ଓ ଈଶ୍ୱର ଉପାସନା କରିବା ପାଇଁ ତିଳେହେଲେ ଉତ୍ସାହ ନ ଥିବ, ଏକଥା ସବୁ ଧ୍ୟାନମାର୍ଗରେ ଜଣା ପଡ଼ିଥିଲା । ତେଣୁକରି ଯେତେବେଳେ ତାଙ୍କର ୧୩ ଜନ୍ମ ହୋଇଥିବ, ଅର୍ଥାତ୍ ଅଚ୍ୟୁତଙ୍କର, ସେଇ ସମୟରେ ସେ ପୁଣି ଆଉଥରେ କଲମ ଧରି ପୂର୍ବର ସେହି କବିତାଗୁଡ଼ିକୁ ଜଣାଇବେ, ଅର୍ଥାତ୍ ପୁନରାବୃତ୍ତି କରିବେ ବୋଲି ପ୍ରଧାନ ଶିଷ୍ୟ ରାମ ଦାସଙ୍କୁ କହିଦେଇଥିଲେ । ଆଜି ସେଇକଥା ସବୁ ହେବାକୁ ବସିଛି । ଶତକଡ଼ା ବା ଶହେ ଲୋକରେ ଦୁଇଜଣ ବିଶ୍ୱାସ ରଖୁଛନ୍ତି ଓ

ଶହେଜଣ ମଧ୍ୟରେ ମାତ୍ର ୫ ଜଣ ଚର୍ଚ୍ଚା କରୁଛନ୍ତି । ବାକି ୯୫ ଜଣ ଏ କାନରେ ପୁରେଇ, ଅନ୍ୟ କାନ ବାଟେ ବାହାକୁ ବାହାର କରି ଦେଉଛନ୍ତି ।

ତେବେ କ'ଣ ଫଳ ଫଳୁଛି ଦେଖାଯାଉ । ''ହାଇରେ କଳି ! ତୁ ଏସବୁ କ'ଣ କଲୁ ! ଏଇଥିପାଇଁକି ବର ମାଗିଥିଲୁ ? ଧନ୍ୟ ତୋ'ର କରାମତି !''—ଏଇ କଥା ପଦଟି ପ୍ରଭୁଙ୍କର । ଏଇ କଥା ସମସ୍ତେ ଜାଣିବା ହୁଅନ୍ତୁ । ତର୍ଜମା—ସେଇ ପ୍ରଭୁ ଶ୍ରୀକଳ୍କୀ ଦେବ ଅନନ୍ତକେଶରୀ ହେଉଛନ୍ତି ପୂର୍ବରୁ ୨୦୦୬ ଯାଏଁ ଗୁପ୍ତରେ ଥିବା ଶ୍ରୀଅରକ୍ଷିତ ଭଞ୍ଜ ବାବା । ଏଇ ୨୦୦୭ରେ ସେ ନିଜର ଗୁପ୍ତ ପରିଚୟକୁ ଭକ୍ତଙ୍କ ସାମ୍ନାରେ ଖୋଲିଦେଲେ ଏବଂ ଏବେ ଭକ୍ତଙ୍କ ମୁଖରୁ ପ୍ରଭୁ ଶ୍ରୀ ଅନନ୍ତ କେଶରୀ ନାମରେ ଡକାପାଇଲେ ।

### "ପ୍ରଭୁ ହୋଇ କ୍ଷମା ନ କଲେ ଭୃତ୍ୟ କରିବ କିସ ?"

ଏଇଟି ଥିଲା ଜଣେ ଭକ୍ତର ମୀନତି, ଶ୍ରୀ ଅଚ୍ୟୁତଙ୍କ ମୁଖରେ ସେଇ ଭକ୍ତଟିର ଭକ୍ତିଅର୍ଘ୍ୟକୁ କବିତାରେ ପରିସ୍ଫୁଟ କରାଯାଇଥିଲା ନିମ୍ନ ପ୍ରକାରେ ।

''ଏଡ଼େ ପ୍ରଭୁ ଆଶ୍ରେ କରିଣ ମନ୍ଦୁଁ ନ ଗଲା ମାନ
ଶ୍ରୀବିମ୍ବା ଅଧରେ ବୋଲୁଛ ଭକ୍ତ ମୋର ଜୀବନ ।୧।
ଭକ୍ତବତ୍ସଳ ତୋହ ବାନା ସବୁଠାରେ ବୋଲାଉ
ଜଗତେ ବିପତ୍ତି ପଡ଼ିଲେ କେହ୍ନେ ଉଦ୍ଧରି ନେଉ ।୨।
ଭୃତ୍ୟ ଅପରାଧୀ ହୋଇଲେ ନାନା ପ୍ରକାରେ ଦୋଷ
ପ୍ରଭୁ ହୋଇ କ୍ଷମା ନ କଲେ ଭୃତ୍ୟ କରିବ କିସ ।୩।
ନାରୀ ଅପରାଧୀ ହୋଇଲେ କ୍ଷମା କରଇ କାନ୍ତ
ସେବକ ଅପରାଧୀ ହେଲେ କ୍ଷମା କରେ ସାମନ୍ତ ।୪।
ତୋହେ ତହୁଁ ବଡ଼କେ ଅଛି ମୋତେ କହ ମୁରାରୀ
ବେତ ମୁଣ୍ଡେ ଛଡ଼ି ବାନ୍ଧିଣ ମୁଁ କରିବି ଗୁହାରୀ ।୫।

ସିନ୍ଧୁ ନନ୍ଦିନୀ ଯା ପୟରେ ହୋଇଛି ପରିଚାରୀ
ଯା'ର ସାମନ୍ତ ଧନବନ୍ତ ତାହା ଭୃତ୍ୟ ଭିକାରୀ ।୬।
ଯେଡ଼େ ପ୍ରଭୁଙ୍କୁ ଏଡ଼େ କଥାଯେ ତ ନୁହଇଁ କିଛି ।
ଦୀନ ଅଚ୍ୟୁତି ଯେ ଭଣଇ ମୋତେ ଭୟ ମାଡୁଛି ।୭।

**ଭାବାର୍ଥ**—ଭକ୍ତଟି କାନ୍ଦି କାନ୍ଦି କହୁଛି—''ପ୍ରଭୁ ! ତୁମେ ତ କହିଛ ଭକ୍ତ ତୁମ ଜୀବନ, ତେବେ ଏ ଅଭାବ କାହିଁକି ? ସିନ୍ଧୁ ନନ୍ଦିନୀ ଅର୍ଥାତ୍ ମା' ଲକ୍ଷ୍ମୀ, ଯାହାଙ୍କ ହସ୍ତରେ ଧନ ଭଣ୍ଡାର ରହିଛି, ସେ ତ ଆପଣଙ୍କର ଗୃହିଣୀ ଅର୍ଥାତ୍ ପତ୍ନୀ । ମା' ଲକ୍ଷ୍ମୀଙ୍କର ସ୍ୱାମୀ ଅର୍ଥାତ୍ ସାମନ୍ତ ଅର୍ଥାତ୍ ଆପଣ ହିଁ ତ ସେ ଧନବନ୍ତ ଅଟନ୍ତି । ତେବେ ଆପଣଙ୍କର ଭୃତ୍ୟ ଅର୍ଥାତ୍ ଆପଣଙ୍କର ଯେ ସେବକ, ସେ ଏପରି ଭିକାରୀ କାହିଁକି ହେଉଛି ? ଆପଣ ତ ତାକୁ ଅର୍ଥାତ୍ ସେବକକୁ ଧନଭଣ୍ଡାର ଦେଇ ଦେଇପାରନ୍ତେ, ତେବେ ଏ ବିଡ଼ମ୍ବନା ଏ ଅବିଚାର କାହିଁକି ? ଏମିତି ମନର କ୍ଷୋଭକୁ ଜଣାଇଛି, ଭକ୍ତଟି ଅଶ୍ରୁଳ ନୟନରେ ।

ପୁଣି କହୁଛି—''ନାରୀ ଅପରାଧୀ ହୋଇଲେ କ୍ଷମା କରଇ କାନ୍ତ । ଅର୍ଥାତ୍ ସ୍ତ୍ରୀର ଦୋଷକୁ ସ୍ୱାମୀ କ୍ଷମା ଦେଇପାରେ । ସେଇପରି ସାମନ୍ତ ଅର୍ଥାତ୍ ମୁନିବ, ସେବାକାରୀର ଦୋଷ ତ୍ରୁଟିକୁ କ୍ଷମା ଦେଇପାରନ୍ତି । ସେହିପରି ମୁଁ ଆପଣଙ୍କର ଭୃତ୍ୟ ବା ପାଦ ସେବାକାରୀ, ମୋତେ ଯଦି କ୍ଷମା ନ ଦେବ ତେବେ ମୁଁ ବା କ'ଣ କରିବି ? ହେ ବିମ୍ବାଧର ! ତୁମପରି ପ୍ରଭୁ ଥାଉଁ ଥାଉଁ ଭକତ ବତ୍ସଳ ବାନା ଧରି ଥାଉଁ ଥାଉଁ, ମୁଁ ଆଜି କି ହିନୀମାନ ହେଉଛି, କି କଷ୍ଟ ଭୋଗୁଛି, କି ଦୁଃଖ ପାଉଛି, କିମିତି ଏସବୁ ଦେଖି ତୁମେ ନୀରବରେ ବସି ରହିଛ ।''

**ତର୍ଜମା**—ହଁ, ଏଇଟି ନିରାଟ ସତ୍ୟ କଥା । ପ୍ରଭୁ ସବୁ ଦେଖୁଛନ୍ତି, ସବୁ ଶୁଣୁଛନ୍ତି, ସବୁ ଜାଣୁଛନ୍ତି, ତଥାପି ଦୁଇଟି ନୟନରେ ଅନେଇ ରହିଛନ୍ତି କ'ଣ କରାଯିବ ବୋଲି ?

ଭକ୍ତର ରହିବାକୁ ଜାଗା ନାହିଁ । ଖାଇବାକୁ ଦାନା ନାହିଁ କି ପିନ୍ଧିବାକୁ କନା ମଧ୍ୟ ନାହିଁ । ତେବେ କ'ଣ କରାଯିବ ? ଏଇ ଭାବନାରେ ପ୍ରଭୁ ପ୍ରଭୁଙ୍କୁ ପଚାରୁଛନ୍ତି, କ'ଣ ଉତ୍ତର ଆସିବ ଆସୁ ! ଟିକିଏ ଅପେକ୍ଷା କରିବାକୁ ପଡ଼ିବ—ସମୟକୁ ।

ସେଇ ଭକ୍ତଟି ପୁଣି ସ୍ତୁତି କରିବାରେ ଲାଗିଲା—

''ଜୟ ନାରାୟଣ ଅନନ୍ତ ଶୟନ ଜୟ କମଳା ବିଳାସ ।
ଜୟ ନରହରି ଜୟ ଆଦିକନ୍ଦ ଶଙ୍ଖ ଚକ୍ର କରେ ବହିଛ ।
ଆହେ ମହାବାହୁ ଲକ୍ଷ୍ମୀର ବଲ୍ଲଭ ପତିତପାବନ ହରି ।
ତୋହରି ଚରଣେ ଭରସା କରିଛି ବାରେ ଶୁଣ ମୋ ଗୁହାରୀ ।
ନୀଳ କନ୍ଦରରେ ବିଜେ କରିଅଛ ବଉଧ ରୂପ ଧରିଣ ।
ଭକତ ନିମନ୍ତେ ରୂପ ଧରିଅଛ ସବୁ ତୋହରି ଭିଆଣ ।
ଠାବେ ଠାବେ ସିନା ତୋହରି ମହିମା କହି ହୋଇଅଛି ମେଳି ।
ଅନନ୍ତ ମହିମା କେ ଅନ୍ତ କରିବ ବ୍ରହ୍ମା ନ ପାରିବେ କଳି ।
ଓଁକାର ମକାର ଚାରିବେଦ ଋକ୍ ଯଜୁ ସାମ ଯେ ଅଥର୍ବ ।
ଆଗେ ଚାରିବେଦ ଶରୀରୁ ବାହାର ଜାତ କରି ବାସୁଦେବ ।
ନାଭିରୁ ଯେ ପଦ୍ମ ବୃକ୍ଷେ ଉପୁଜିଲା ତହୁଁ ବ୍ରହ୍ମା ହେଲେ ଜାତ ।
ଆଜ୍ଞା ପାଇଣ ଯେ ସ୍ୱୟଂ ବେଦପତି ଭିଆଣ କଲେ ଜଗତ ।
ସ୍ଥାବର କୀଟ ପତଙ୍ଗ ଚାରିଖାନି ଲୋକା ଲୋକ ଗିରି ଆଦି ।
ତୋହରି ଆଜ୍ଞାରେ ସକଳ ଭିଆଣ କଲେ ପରମ ସୁବୁଦ୍ଧି ।
ମହିମା ଅନନ୍ତ କେ କରିବ ଅନ୍ତ ଅନନ୍ତ ନାମ ଯାହାର ।
ଆଦି ନାହିଁ ଯହିଁ କି ଉପମା ତହିଁ ସ୍ତୁତି କରେ ବେଦବର ।
କମଳ ନୟନ ଚନ୍ଦ୍ରମା ବଦନ କୋଟି ସୂର୍ଯ୍ୟ ଜିଣି ତେଜ ।
ପୃଥୀ ଆପ ତେଜ ବାୟବ ଆକାଶ ସକଳ ଠାବେ ବିରାଜ ।
ଆହେ ମହାବାହୁ ବାଞ୍ଛା କଳ୍ପତରୁ କମଳା ବିଳାସ ହରି ।

ସବୁ ପୁରେ ତୋର ମହିମା ପୁରିଛି ବଚନେ କେ କହି ପାରି ।
ଜ୍ୟୋତି ନିରାନନ୍ଦ ଜ୍ୟୋତିରେ ଆନନ୍ଦ ଜ୍ୟୋତି ଜ୍ୟୋତିରେ ପ୍ରକାଶ ।
ଜ୍ୟୋତି ଘେନି ଜ୍ୟୋତି ଉଦୟ ହୋଇଛି ଜ୍ୟୋତି ସବୁ ପୁରେ ବାସ ।
ଯୋଗ ଲୟ କରି ମୁନି ବସିଛନ୍ତି ଯୁଗ ଯୁଗାନ୍ତରୁ ଜାଣ ।
ଯୁଗକୁ ଯୁଗ ଏହିମତେ ଲୀଳା କରୁଅଛ ଭଗବାନ ।
ମୁହିଁ ମୂଢ଼ ଜନ କିଛି ନ ଜାଣଇ ତୋ ଭକ୍ତ ପାଦେ ଶରଣ ।
ପତିତପାବନ ଆହେ ନାରାୟଣ ଶ୍ରୀକରେ ଚକ୍ର ଧରିଣ ।
ଚକ୍ରର ଯେ ତେଜ ପୃଥିବୀ ଦହିଯ୍ୟ କରିପାର ହେ ଗୋସାଇଁ ।
ତୋହ ଆଜ୍ଞା ତିଳେ ନ ହେଲେ ଗୋସାଇଁ ତିରଣ ଯେ ନ ହଲଇ ।
ତୁହି ନାରାୟଣ ତୁହି ଚକ୍ରଧର ତୁହି ସଂସାର କାରଣ ।
ତୋହରି ଲୀଳା କଉତୁକ ଲାଗିଅଛି ସବୁ ତୋହରି ଭିଆଣ ।
ତୋହର ବିଭୂତି କେ ପାରିବ ଘିତି ତୋ ଆଜ୍ଞା ଯାହାକୁ ନାହିଁ ।
ତୋହ କୃପା ଯାକୁ ହୋଇବ ଗୋସାଇଁ ସେହି ଜନ ପାରେ କହି ।
ମୁହିଁ ସେ ଅଜ୍ଞାନ ହୀନ ଜନ ପ୍ରାଣୀ ତୋହ ଭକ୍ତଙ୍କ କିଙ୍କର ।
ମୁଁ କାହୁଁ ଜାଣିବି ତୋହରି ମହିମା କୃପା ନାହିଁ ଯେବେ ତୋର ।
କୃପାସିନ୍ଧୁଙ୍କୁ ମୁଁ ଗୁହାରି କରୁଛି କୃପା କରିବ ଗୋସାଇଁ ।
ତୋହ କୃପା ଯେବେ କଣିକାୟେ ଥିବ ଅଚ୍ୟୁତ ନିସ୍ତରିବଇଁ ।"

**ସରଳ ବ୍ୟାଖ୍ୟା**—ଭକ୍ତର ମନୋଭବକୁ ନିଜ ଲେଖନୀ ମୁନରେ ପରିସ୍ଫୁଟ କରିଥିଲେ ଶ୍ରୀ ଅଚ୍ୟୁତ ଅର୍ଥାତ୍ ଆଜିକାର ଶ୍ରୀ ଅନନ୍ତକେଶରୀ । ଆଜିକୁ ୪୭୦ ବର୍ଷ ପୂର୍ବରୁ ଅର୍ଥାତ୍ ୧୫୩୭ ମସିହା ସମୟେ ନା ସାହିତ୍ୟ ଥିଲା ସଂସ୍କୃତି ଥିଲା । ପ୍ରତି ଲୋକଙ୍କର ଧର୍ମ ଭାବନାକୁ ଜାଗ୍ରତ କରିବା ପାଇଁ ତଥା ଶିକ୍ଷାଦୀକ୍ଷାର ମାନ ବଢ଼େଇବା ପାଇଁ, କାବ୍ୟ କବିତା ମାଧ୍ୟମରେ ଉପଦେଶ ଦିଆଯାଇଥିଲା, ସାମାଜିକ ଜୀବନଯାପନ କାମରେ ଆସିବା ପାଇଁ । କେତେବେଳେ ସ୍ତୁତି, ଜଣାଣ, ଭଜନ ମାଧ୍ୟମରେ ତ

କେତେବେଳେ ସତର୍କବାଣୀ ଆକାରରେ । ସେଇ ପୂର୍ବ ବର୍ଣ୍ଣିତ; ସେଇ ପୂର୍ବ ଲିଖିତ ବାଣୀଗୁଡ଼ିକ ଏବେ, ଅର୍ଥାତ୍ ଏ ଶେଷ କଳିରେ, ଅର୍ଥାତ୍ ଏ ଘାଟୀମୁଣ୍ଡରେ, ଜଣେଇ ଦିଆଯାଉଛି । ସରଳ ଅର୍ଥରେ କୁହାଯାଇଛି— ତାକୁ ଠିକ୍ ବୁଝିବା ଲୋକ ବୁଝିବ, ଠିକ୍ ଅର୍ଥ କଲା ଲୋକ ଠିକ୍ ଅର୍ଥ କରିବ; ଏଥିରେ ସନ୍ଦେହ ନାହିଁ ।



## "ଆରତ ତାରଣ ବାନାକୁ ନେଇଣ ଭଣ୍ଡାରେ ଲୁଚାଇ ଆସ ।"

ଏଇ ଖେଦୋକ୍ତିଟି ଥିଲା ଜଣିଏ ଭକ୍ତର । ସେଇ ଭକ୍ତର ମନର ଭାବକୁ ଶ୍ରୀ ଅଚ୍ୟୁତ ନିଜ ଲେଖନୀ ମୁନରେ ପ୍ରକାଶ କରିଥିଲେ ନିମ୍ନ ପ୍ରକାରେ :

"କମଳମୁଖ ଶଙ୍ଖ ଚକ୍ର ଭୂଷଣ ଖଗପତି ନାଥ ହରି ।
ଖରେ ନ ଶୁଣିଲେ ଗାଢ଼ ବିପତ୍ତିକି ଗଲିଟି ନିଶ୍ଚୟେ ସରି ।
ଘନ ସୁନ୍ଦର ହେ ଘୋର ବିପଦ ହୋଇଲା
ଅନ୍ତର୍ଯ୍ୟାମୀ ଥାଉଁ ଅନ୍ନ ବସ୍ତ୍ର କଷ୍ଟ ଅତି ହିଁ ପ୍ରବଳ ହେଲା ।୧।
ଚକ୍ର ଧରିଅଛ ଦୁଃଖୀଙ୍କର ଦୁଃଖ ଛେଦନ କରିବା ପାଇଁ ।
ଛତି ମଧ୍ୟରେ ଜୟବାନା ଉଡୁଛି ଜଗତ ବିଦିତ ହୋଇ ।
ଝଟତି ଶୁଣିହେ ଝାଡ଼େ ଗର୍ଭାଏଣୀ ଡାକ ।
ନିଷ୍ଠୁର ହୋଇ ମୋ ଡାକ ନ ଶୁଣିଲେ ନିଶ୍ଚୟେ ହେଉଛି ଶୋକ ।୨।
ଟାଣ ବିପତ୍ତିରୁ ପାରି ପାଣ୍ଡବଙ୍କୁ ଠାବ ଦେଇଣ ରଖିଲ ।
ଠୁଳ ବିପତ୍ତି ପଡ଼ିଲାରୁ ଡାକିଲି ଡାକ କର୍ଣ୍ଣେ ନ ଶୁଣିଲ ।
ଢାଳେ କଷ୍ଟ ମୁଁ ଯେ ଢୋକିବି ନ ସହି ବିଷ ।
ଆରତ ତାରଣ ବାନାକୁ ନେଇଣ ଭଣ୍ଡାରେ ଲୁଚାଇ ଆସ ।୩।
ତୋ ଆଶ୍ରା କରି ଏ ଦୁଃଖ ନ ଗଲା ଆଉ କା ଆଗେ କହିବି ।
ସ୍ଥିର ଲୋଚନେ କ୍ଷଣେ ମାତ୍ର ଚାହିଁଲେ ଦୁଃଖ ତୁରିତେ ଦହିବି ।

ଧୂଳି ଖେଳରେ ହେ ଅନ୍ଧକୁ ଲୋଚନ ଦେଲ ।
ନିରେଖ ଜନରେ ନିର୍ଦ୍ଦୟ ହୋଇଣ ଗାଢ଼େ ମଉନ ହୋଇଲ ।୪।
ପରମ ଦୟାଳୁ ପାଶେ ଥାଉ ଥାଉ ଫଳିବ ନାହିଁ ଅଦୃଷ୍ଟ ।
ଫନ୍ଦା କରିଅଛ ବନଜ ଚରଣ ବରି ନାଶଯିବି କଷ୍ଟ ।
ଭକ୍ତ ବତ୍ସଳ ହେ ଭୃତ୍ୟ ନାଶିଯିବ ଯେବେ ।
ଶ୍ରୀ ମଧୁସୂଦନ ନାମ ମହାପ୍ରଭୁ କିମ୍ପା ସଂସାରେ ଭଜିବେ ।୫।
ଜଳ ମଧ୍ୟରେ ଡାକିଲା ଗଜରାଜ ରକ୍ଷା କଲ ଚକ୍ରଧର ।
ଲକ୍ଷ୍ମୀ ସାଇଁ ପ୍ରଭୁ ନାଶିଲ ଗ୍ରାହକୁ ଲାଜୁଁ ଦ୍ରୌପଦୀ ତାରିଲ ।
ବଳି ବଧିଲ ହେ ବିଚିତ୍ର ଉପାୟ କଲ ।
ଶମନ ପୁରୁ ସପତ ପୁଅ ଆଣି ଗୁରୁଙ୍କୁ ସମର୍ପି ଦେଲ ।୬।
ସେବି ଅଛି ପଦ୍ମପାଦରେ ନିରତେ ଶରଣ ପଶିବି ମୁହିଁ ।
ସବୁ କଥାକୁ କରିଛି ବଡ଼ ଆଶା ହରି ନେଲେ ହେବ ନାହିଁ ।
କ୍ଷଣେ ପାଇବି ଯେ ଇନ୍ଦ୍ର ସମ୍ପତ୍ତି କି ଛାର
କ୍ଷିତି ମଧ୍ୟରେ ଅଚ୍ୟୁତାନନ୍ଦ ଦୁଃଖ ଛେଦନ କର ଚକ୍ରର ।୭।

**ସରଳ ଭାବାର୍ଥ**—ଭକ୍ତଟି କାନ୍ଦି କାନ୍ଦି ପ୍ରଭୁଙ୍କୁ ଦୁଃଖ ଜଣାଇ କହୁଛି—"ଆହେ କମଳମୁଖ ! ହେ ପଦ୍ମମୁଖ ! ହେ ଶଙ୍ଖ ଚକ୍ର ଧାରୀ ! ହେ ଖଗପତି ନାଥ ! ହେ ଗରୁଡ଼ାସନ ! ମୋ ଦୁଃଖକୁ ଟିକେ ସ୍ଥିର ନୟନରେ ଦେଖନ୍ତୁ । ଆପଣତ ଅନ୍ତର୍ଯ୍ୟାମୀ ପ୍ରଭୁ, ଆପଣଙ୍କୁ ସମସ୍ତଙ୍କ ଅନ୍ତରରକଥା ଜଣା, ଆପଣ କି ମୋ ଦୁଃଖ; ମୋ ହୃଦୟର ବେଦନାକୁ ଜାଣିପାରୁ ନାହାନ୍ତି ? ମୋ ପାଇଁ ଅନ୍ନ ଓ ବସ୍ତ୍ର ଅର୍ଥାତ୍ ଖାଦ୍ୟ ଓ ପୋଷାକ, ମୁଁ ଏ ଅଭାବରେ ବ୍ୟତିବ୍ୟସ୍ତ ହେଲି, ଦୁଃଖ ପାଇଲି ଓ ଚିନ୍ତାକଲି । ଆପଣତ ଚିନ୍ତାମଣୀ, ହେ ପ୍ରଭୁ ! ମୋ ଚିନ୍ତା ଟିକିଏ ଦୂରକରନ୍ତୁ, ଏତିକି ଆପଣଙ୍କ ପାଦରେ ମୋର ଗୁହାରୀ ।"

ପୁଣି କହୁଛି—"ହେ ପ୍ରଭୁ ! ଦୁଃଖୀଙ୍କର ଦୁଃଖ ଛେଦନ ପାଇଁ ଅର୍ଥାତ୍ ଦୁଃଖୀଙ୍କର ଦୁଃଖ ନିବାରଣ ପାଇଁ ଆପଣ ହାତରେ ଚକ୍ରକୁ ଧାରଣ

କରିଛନ୍ତି । ଆପଣଙ୍କ ଜୟ ବାନା ଉଡୁଛି । ଆପଣ ମୋ ପ୍ରତି ଏତେ ନିଷ୍ଠୁର କାହିଁକି ହେଉଛନ୍ତି ?

ପୁଣି କେଡ଼େ ବଡ଼ ବିପଦରୁ ପାଣ୍ଡବ ପାଞ୍ଚଭାଇଙ୍କୁ ରକ୍ଷା କରିଥିଲେ ? ଆପଣଙ୍କର ଆରତ ତାରଣ ବାନା ଉଡୁଛି । ମୋର ବଡ଼ ଦୁଃଖ ପଡ଼ିଲା, ମୁଁ ଆପଣଙ୍କୁ ଡାକିଲି, ଆପଣ ଶୁଣିଲେ ନାହିଁ । ତେବେ ଏ ଭଣ୍ଡାର ମଧ୍ୟରେ ସେଇ ଉଡୁଥିବା ଆର୍ତ୍ତତ୍ରାଣ ବାନାକୁ ଅର୍ଥାତ୍ ପତାକାକୁ ଲୁଚେଇ ଦେଇ ରଖନ୍ତୁ । ମନର କ୍ଷୋଭକୁ ଅର୍ଥାତ୍ ମନର ଖେଦୋକ୍ତିକୁ ପ୍ରଭୁଙ୍କ ଆଗରେ ଉପସ୍ଥାପନ କରି, ଦୁଃଖରେ ମ୍ରିୟମାଣ ହୋଇ, ଅଧୀର ହେଉଛି ସେଇ ପରମ ଭକ୍ତଟି । ଏଇ କଥାଟି ଏଇ ଗୁହାରୀଟି ପ୍ରଭୁଙ୍କ କର୍ଣ୍ଣରେ ବାଜି ଯାଉଥାଏ ।

ତା'ପରେ ଭକ୍ତଟି କ'ଣ କହୁଛି ?

—କହୁଛି, ''ସ୍ଥିର ଲୋଚନ ହେ ! ଟିକିଏ ସ୍ଥିର ଭାବେ ମୋତେ ଦି' ଆଖିରେ ଦେଖନ୍ତୁ ଅର୍ଥାତ୍ ମୋ ପ୍ରତି କୃପାକରନ୍ତୁ । ଧୂଳିଖେଳ ବେଳେ ଅନ୍ଧକୁ ଲୋଚନ ଅର୍ଥାତ୍ ଚକ୍ଷୁଦାନ କରିଛନ୍ତି । ଏ ନିରେଖ ଜନ ପ୍ରତି ନର୍ଦ୍ଦୟ ହୁଅନ୍ତୁ ନାହିଁ । ଆପଣ ପରମ ଦୟାଳୁ ଠାକୁର । ଏ ଭୃତ୍ୟ ପ୍ରତି ଏ ସେବକ ପ୍ରତି ଟିକିଏ ସଦୟ ହୁଅନ୍ତୁ । ମୋ ଦୁଃଖ ଦୂର ହେଉ । ଆପଣଙ୍କ ପରି ପ୍ରଭୁ ଥାଉଁ ଥାଉଁ, ଯଦି ଏ ଭୃତ୍ୟ ନାଶ ଯାଏ, ତେବେ ଏ ସଂସାରରେ ଆପଣ ବୋଲାଇଥିବା ଶ୍ରୀ ମଧୁସୂଦନ ନାମକୁ କିଏ କାହିଁକି ବା ଡାକିବ ?

ପୁଣି କହୁଛି—''ଜଳ ମଧ୍ୟରେ ବା ପାଣିରେ ଥାଇଁ, ହାତୀ ଡାକ ଛଡ଼ିଥିଲା ; କୁମ୍ଭୀର ମୁଖରୁ ରକ୍ଷାପାଇଁ । ସେତେବେଳେ, ପ୍ରଭୁ ହେ ଲକ୍ଷ୍ମୀ ସାଇଁ ! ଆପଣ ଚକ୍ରକୁ ପେଶି ଦେଇଥିଲେ । ପୁଣି ଲାଜ ସରମରୁ ରକ୍ଷାପାଇଁ, ଦୁଃଶାସନ ବିବସ୍ତ୍ର କଲାବେଳେ ଦ୍ରୌପଦୀଙ୍କୁ ସାହା ହୋଇଥିଲେ । ଟିକିଏ ମାତ୍ର କପଡ଼ା ସେ ଆପଣଙ୍କ ହାତ ଆଙ୍ଗୁଳି କାଟି ହୋଇଯିବା ବେଳେ ଦାନ କରିଥିଲେ, ଆପଣ ତାଙ୍କୁ କୋଟି କୋଟି ବସ୍ତ୍ର ବା କୋଟି କୋଟି ଲୁଗା ଦାନ ଦେଇ ଋଣ ଶୁଝିଥିଲେ ।

—ପୁଣି ଆପଣ କ'ଣ କଲେନା ?

''ବିଚିତ୍ର ଉପାୟ କରି ବଳିଙ୍କୁ ବଧ କରିଥିଲେ । ଯମଙ୍କ ପୁରରୁ ଗୁରୁଙ୍କର ସାତୋଟି ପୁଅଙ୍କ ଜୀବନ ଆଣି ଅର୍ଥାତ୍ ଜୀବନ୍ତ ଅବସ୍ଥାରେ ସାତୋଟିଙ୍କୁ ଗୁରୁଙ୍କ ହସ୍ତରେ ଅର୍ପଣ କରିଥିଲେ । ଗୁରୁଙ୍କୁ ଖୁସି କରାଇଥିଲେ ।''

''ମୁଁ ଆପଣଙ୍କର ସେଇ ପଦ୍ମପାଦରେ ଲୟ ଲଗାଇ ଅଛି, ସେହି ପାଦରେ ଶରଣ ପଶୁଛି, ମୋ ପ୍ରତି ଟିକିଏ ସଦୟ ହୋଇ କୃପା ନେତ୍ରରେ ଚାହାଁନ୍ତୁ । ମୋର ଧନ ଓ ସମ୍ପତ୍ତି ଲୋଡ଼ା ନାହିଁ, ଆପଣଙ୍କ ସାନ୍ନିଧ୍ୟ, ଆପଣଙ୍କ ଦର୍ଶନ ଲୋଡ଼ା । କ୍ଷଣେ ମାତ୍ର ଦେଖାଦିଅନ୍ତୁ । 'ଇନ୍ଦ୍ର ସମ୍ପତ୍ତି' ଥିଲେ ଅର୍ଥାତ୍ ଯେତେ ଯାକ ପୃଥିବୀରେ ଧନଭଣ୍ଡାର ସବୁ ଅଛି, କି ହେବ ସେ ଲୋକ ପାଖରେ ଥିଲେ ? ଯଦି ସେଇ ଧନବାନ୍ ବ୍ୟକ୍ତି ବା ଧନଦୌଲତର ଅଧିକାରୀ ଆପଣଙ୍କର ଦର୍ଶନ ନ ପାଏ ?''

**ତର୍ଜମା**—ସେଇ ୧୫୩୭ ମସିହା ବେଳେ ସେଇ ପ୍ରଭୁ ଥିଲେ ନିଜେ ଅଚ୍ୟୁତାନନ୍ଦ, ଏଇ ୨୦୦୭ ସମୟରେ ସେ ହେଲେ ଶ୍ରୀ ଅନନ୍ତ କେଶରୀ କଳ୍କୀଦେବ ଅର୍ଥାତ୍ ଶ୍ରୀ ଅରକ୍ଷିତ ଭଞ୍ଜ ବାବା ଏବେ ନିଜକୁ ପୂର୍ବର ଅଚ୍ୟୁତ ଏବର କଳ୍କୀ ବୋଲି ଘୋଷଣା କଲେ । ନିଜକୁ ଏଥି ପୂର୍ବରୁ ଗୁପ୍ତ ରଖିବା ପାଇଁ ନିଜ ନାମ ପୂର୍ବରୁ ''ବାବା'' ଶବ୍ଦଟି ପ୍ରୟୋଗ କରୁଥିଲେ । କିନ୍ତୁ ଏବେ ଶ୍ରୀ ନିରାକାର ପରଂବ୍ରହ୍ମ ତାଙ୍କ ଶରୀରରେ ବିଶ୍ରାମ ନେବାରୁ ଅର୍ଥାତ୍ ତାଙ୍କର ଶକ୍ତି ପ୍ରାପ୍ତି ହେବାରୁ ନିଜର ପରିଚୟକୁ ଆଉ ଗୁପ୍ତ ନରଖି ଖୋଲିଦେଲେ । ପୂର୍ବର ଅଚ୍ୟୁତ ହୋଇଥିଲେ ହାଡ଼ିଦାସ, ଏବେ ପୁଣି ସେଇ ଏକାଆତ୍ମା ହେଲେ ଅରକ୍ଷିତ ଅର୍ଥାତ୍ ଶ୍ରୀ ଅନନ୍ତ କେଶରୀ । ତେଣୁକରି ସମସ୍ତ ଭକ୍ତମାନଙ୍କୁ ଦେକୁରୀ ଗ୍ରାମରେ ବାସଗୃହ କରି ରହିଥିବା ପୂର୍ବରୁ ଅରକ୍ଷିତ ଏବେର ଶ୍ରୀ ଅନନ୍ତ କେଶରୀ ଡାକୁଛନ୍ତି ଶୀଘ୍ର ଆସି ସାକ୍ଷାତ କରି ଧର୍ମ ସଂସ୍ଥାପନା ଓ ଯୁଗକର୍ମରେ କ୍ଷୁଦ୍ର ଗୁଣ୍ଡୁଚି

ମୂଷା ପରି ସାହାଯ୍ୟ ସହଯୋଗ କରିବା ପାଇଁ ଏବଂ ଆଗତ ମହା ମହା ବିପଦରୁ ସୁରକ୍ଷିତ ହୋଇ ରହିବା ପାଇଁ ଏଇଟି ଦେବସଭାର ଘୋଷଣା ନାମା ବୋଲି ବୁଝି ନିଅନ୍ତୁ ।



## ଦ୍ବିତୀୟ ପରିଚ୍ଛେଦ

### 'ମାୟାରେ ପ୍ରାଣୀମାନେ ହେବେ ମୋହି
### ମୋତେ ନ ଚିହ୍ନିବେ ଜଗତେ କେହି ।'

ପ୍ରଧାନ ଶିଷ୍ୟ ରାମଦାସଙ୍କୁ କହି ଦିଆଯାଇଥିଲା—''କଳିଯୁଗର ଶେଷ ବେଳକୁ ଲୋକେ ମାୟାରେ ମୋହିତ ହେବେ । ଦେବୀ ଯୋଗମାୟା ମାୟା ଏପରି ଭାବେ ରଚନା କରିବେଯେ, ମୋତେ କେହି ଚିହ୍ନି ପାରିବାକୁ ସକ୍ଷମ ହେବେ ନାହିଁ ।''

''ଜଗତରେ ପାପ ଘୋଟିଥିବ । ସମସ୍ତେ ପାପ ପଥକୁ ଟାଣି ହୋଇ ଯିବାକୁ ଭଲ ମଣୁଥିବେ ଅର୍ଥାତ୍ ପାପ କାର୍ଯ୍ୟ କରିବାକୁ ଆନନ୍ଦ ବା ସୁଖ ପାଉଥିବେ । ବିଶେଷକରି ନାରୀର ରୂପକୁ ସମସ୍ତେ ଦୃଷ୍ଟି ପକାଉଥିବେ ।

ନାରୀମାନଙ୍କ ଶରୀରକୁ ସମସ୍ତଙ୍କର ନଜର ପଡୁଥିବ । କାମଶାସ୍ତ୍ରକୁ ଲୋକେ ପଢ଼ିବାକୁ ଭାରି ଆଦର କରୁଥିବେ । ଧର୍ମଶାସ୍ତ୍ର, ପୁରାଣ, ପୋଥି ପଢ଼ିବାକୁ ଆଗ୍ରହ କମି କମି ଯାଉଥିବ ।''

ପ୍ରଧାନ ଶିଷ୍ୟ ରାମଦାସ ପଚାରିଥିଲେ—''କାହିଁକି ନାରୀ ଆସକ୍ତି ଭାବ ଲୋକଙ୍କ ମନପ୍ରାଣକୁ ଛୁଉଁଥିବ ?''

ତହୁଁ କୁହାଯାଇଥିଲା—''ନାରୀ ପ୍ରେମରେ ଲୋକେ ପଡ଼ି, କଳି ଦେବତାଙ୍କ ଧ୍ବଂସ ଲୀଳାରେ ସାମିଲ ହୋଇଯିବେ । ତେଣୁ ଯୁଗଶେଷ ସମୟକୁ ଖୁବ୍ ହୁସିଆରରେ ରହିଥିବୁ । ସେ ଦିଗକୁ ମୋଟେ ମନ ବଳାଇବୁ

ନାହିଁ । ଯେତେବେଳେ ଦେଖିବୁ ଓ ଶୁଣିବୁ ଯେ, ସ୍ଥାନେ ସ୍ଥାନେ କେବଳ ନାରୀଙ୍କ ପ୍ରତି ଅସଦ୍ ବ୍ୟବହାର, ଯଥା—ବଳାତ୍କାର ବା ଜୋର୍ ଜବରଦସ୍ତି ଧର୍ଷଣ, କେଉଁଠି କେଉଁଠି ଲୁଟ୍‌ମାର୍ ବା ହତ୍ୟା, କେଉଁଠି କେଉଁଠି ନିର୍ଯ୍ୟାତନା ମିଳୁଥିବ ଶାଶୂ, ଶ୍ୱଶୁର, ନଣନ୍ଦ ଓ ସ୍ୱାମୀଙ୍କ ପକ୍ଷରୁ କିଏ କାହାକୁ କିରୋସିନି ଓ ପେଟ୍ରୋଲର ନିଆଁରେ ଜଳେଇ ଦେଉଥିବ ତ କିଏ କାହାକୁ ବିଷ ପିଆଇ ଦେଇ କିଏ କାହାକୁ ବେକରେ ଲୁଗାଦ୍ୱାରା ବାନ୍ଧି ଟଙ୍ଗେଇ ଦେଉଥିବ, କିଏ କାହାକୁ ଅର୍ଥାତ୍ ଜାଗା ଜାଗାରେ ପୁରୁଷ ନିଜ ବିବାହିତ ସ୍ତ୍ରୀକୁ ଛାଡ଼ପତ୍ର ଦେଉଥିବ, ସେଇ ସମୟଟି ହିଁ ହୋଇଥିବ କଳିଯୁଗର ଅନ୍ତିମ ମୁହୂର୍ତ୍ତ ।

**ଦୃଷ୍ଟିପାତ**—ପ୍ରତି ଯୁଗରେ ନାରୀ ଉପରେ ଅତ୍ୟାଚାର ହୋଇ ଯୁଗ ସରିଥାଏ । ଏ ସବୁ ବିଧିର ବିଧାନ । ପ୍ରତି ଯୁଗର ଶେଷ ସମୟରେ ନାରୀ ପାଇଁ ଲଢ଼େଇ ହୋଇ ସବୁ ଛିନ୍ନଭିନ୍ନ ହୋଇଯାଇଛି ।

ଦ୍ୱାପରରେ କୌରବ ବଂଶର ଶହେ ଭାଇଙ୍କର ଲୋଲୁପ ଦୃଷ୍ଟି ପଡ଼ିଥିଲା ନାରୀ ସମାଜ ଉପରେ । ଦୁଷ୍ଟଙ୍କର ବିନାଶ ପାଇଁ ପ୍ରଭୁ ଜନ୍ମ ନେଇଥିଲେ ଏବଂ ଜଣିଏ ଦ୍ରୌପଦୀର କ୍ରୋଧାଗ୍ନି ଯୋଗୁଁ ସାରା ବଂଶଟି ଜଳି ଯାଇଥିଲା ।

ବର୍ତ୍ତମାନ ସମୟଟିରେ ସେହି ଦ୍ୱାପରର ଶେଷ ସମୟର ସଙ୍କେତମାନ ଉପୁଜିଥିବାର ପରିଲକ୍ଷିତ ହେବାକୁ ବସିଲାଣି ।

ଦ୍ୱାପର ଯୁଗ ଶେଷକୁ ପ୍ରବେଶ କରିଥିଲା କଳି । ଦ୍ୱାପରରେ ଯେତିକି କଷ୍ଟ ନାରୀ ସମାଜକୁ ପଡ଼ିଥିଲା ଶେଷ ମୁହୂର୍ତ୍ତକୁ ଠିକ୍ ତହିଁର ୪ ଗୁଣ କଷ୍ଟ ପଡ଼ିବ ବୋଲି କଳିରେ କୁହାଯାଇଥିଲା ।

**ତର୍ଜମା**—ବର୍ତ୍ତମାନ ସମୟଟିରେ କେବଳ ସେଇସବୁ କଥା ଶୁଣିବାକୁ ଓ ଦେଖିବାକୁ ଲୋକେ ପାଇଲେଣି । ପ୍ରତିଦିନ ଖବରକାଗଜ ଓଲଟାଇଲେ ଖାଲି ନାରୀଙ୍କ ଦୁଃଖ ନିର୍ଯ୍ୟାତନା, ମାରଣ ସମ୍ବାଦ ପାଠ

କରିବାକୁ ମିଳୁଛି । ଏବେ ତ ଯାହା ଘଟୁଛି ବା ଘଟି ଚାଲିଛି, କିଛି ନୁହେଁ ବୋଲି କହିବାକୁ ହେବ; କିନ୍ତୁ ଆଗକୁ ୪/୫ ବର୍ଷ ବେଳକୁ ଯେ, ଏ ସମସ୍ୟା କି ରୂପ ଧାରଣ କରିବ, ତାହା ବର୍ଣ୍ଣନା କରିବା ବା ପ୍ରକାଶ କରିବାକୁ କୁଣ୍ଠାବୋଧ ଲାଗୁଛି । ବର୍ତ୍ତମାନ କେବଳ ଭକ୍ତମାନଙ୍କୁ ଏ ଛୋଟିଆ ଚେତାବନୀଟି ଶୁଣାଇ ଦିଆଯାଉଛି, ସେ ଭକ୍ତ ପୁରୁଷ ହୁଅନ୍ତୁ ବା ନାରୀ ହୁଅନ୍ତୁ, ଟିକିଏ ଏ କଥାକୁ ମଥାରେ ପୂରାନ୍ତୁ ।

"କଳି ଦେବତା ତ ସବୁ ନାଟ ଲଗାଇ ଦେବାପାଇଁ ପ୍ରସ୍ତୁତ ହୋଇ ସାରିଲେଣି । ନିଜେ ସତର୍କ ନ ହେଲେ ଅସୁବିଧାରେ ପଡ଼ିଯାଇ ପାରନ୍ତି ।"



## "ବେକରେ ନ ଥିବ ମାଳି । ସର୍ବେ ପିନ୍ଧିବେ ଲୁଙ୍ଗି । ହେଉଥିବେ ଖାଲି ଧନ୍ଦି ।"

ସନାତନ ହିନ୍ଦୁ ଧର୍ମରେ ଅଛି—ଲୋକେ ବେକରେ ମାଳି ପିନ୍ଧିବା କଥା । ଲୁଙ୍ଗି ପିନ୍ଧିବା ଉଚିତ ନୁହେଁ । ଧୋତି, ଚଦର, ପାଇଜାମା ବ୍ୟବହାର କରିବା କଥା । ସନ୍ଧ୍ୟା, ସକାଳେ ମହାମନ୍ତ୍ର ଟିକେ ଜପ କରି, ପ୍ରଭୁଙ୍କ ପାଦରେ ନିଜକୁ ସମର୍ପି ଦେବା କଥା । ନିଜର ବେଶଭୂଷା, ଖାଦ୍ୟପେୟ, ଆଚାର ନୀତି, ସରଳ ଜୀବନଯାପନ, ବିଳାସବ୍ୟସନଠାରୁ ଦୂରେଇ ରହିବା, ସତ୍ୟ ଶାନ୍ତି ଦୟା ଓ କ୍ଷମା ଏ ଚାରିଟିକୁ ଧରି ରଖ, ପ୍ରଭୁ ନାମ ନେଲେ କେବେ ଅଶାନ୍ତି ଆସିବ ନାହିଁ ।

କିନ୍ତୁ ଦେଖାଯାଉଛି ଆଜିକାଲି ଏ ସବୁ କଥା ଲୋକଙ୍କ ମନରେ ନାହିଁ । ତେଣୁ ଶାନ୍ତି ପାଉ ନାହାନ୍ତି । ଚାରିଆଡ଼େ ଅଶାନ୍ତି । ଧନ ଥିବା ଲୋକଙ୍କୁ ପଚାରିବ ଯାହା, ଧନ ନ ଥିବା ଲୋକଙ୍କୁ ପଚାରିବ ସେଇୟା । ଧନ ଥିଲେ ଚିନ୍ତା ଓ ଧନ ନ ଥିଲେ ବି ଚିନ୍ତାରେ ବୁଡ଼ି ରହୁଛନ୍ତି । ତେବେ ଶାନ୍ତି ମିଳିବ କେମିତି ?

ସୃଷ୍ଟି କର୍ତ୍ତାଙ୍କର ଆଦେଶ ଅବମାନନା କଲେ, ଲୋକେ ଏପରି ହେବ । ନୀତି ଉପଦେଶ ପାଇଁ ତ, ଶାସ୍ତ୍ରପୁରାଣ ରଚନା ହୋଇଛି; କିନ୍ତୁ କେତେଜଣ ଆଜିକାଲି ଶାସ୍ତ୍ରପୁରାଣକୁ ମାନୁଛନ୍ତି ବା ଭୟ ଭକ୍ତି କରୁଛନ୍ତି ?

ଏହାର ଉତ୍ତର ମିଳିବ, ଶତକଡ଼ା ଦୁଇ କିମ୍ବା ଚାରି । ଯେଉଁ ଅଳ୍ପ ସଂଖ୍ୟକ ମହତ ଆତ୍ମା ମାନୁଛନ୍ତି ବା ପାଳନ କରୁଛନ୍ତି, ସେମାନେ ଅନ୍ୟମାନଙ୍କୁ ମଧ୍ୟ ବୁଝେଇବାକୁ ବା ପ୍ରବର୍ତ୍ତାଇବା ପାଇଁ ଭୟ କରୁଛନ୍ତି । କାଳେ ବୁଝେଇବାକୁ ଥିବା ଲୋକଠାରୁ ହାସ୍ୟ ପରିହାସର କଥା ମିଳିଯିବ କି, ଏହାଦ୍ୱାରା ମହାପୁରୁଷଙ୍କୁ ନିନ୍ଦା ମିଳିବ ବା ମହାପୁରୁଷଙ୍କ ବାନାକୁ ନିନ୍ଦା ହେବ । ଏଇ ଡରରେ ସେମାନେ ପାଟି ଚୁପ୍ କରି ବା ମୁହଁ ବନ୍ଦ କରି ରହି ଯାଉଛନ୍ତି । ଖାଲି ଡାକୁଛନ୍ତି—"ପ୍ରଭୁ ! ଆମେ ବା ଆଉ କ'ଣ କରିପାରିବୁ, ତୁମ୍ଭ ସଂସାରକୁ ତୁମ୍ଭେ ସମ୍ଭାଳ, ଇତ୍ୟାଦି କଥା—ମାନ ।"

ଏସବୁ କଥାମାନ ପ୍ରଭୁଙ୍କ କାନରେ ବାଜୁଛି । ତେବେ ପ୍ରଭୁ କ'ଣ କିପରି ତାଙ୍କ ସଂସାରକୁ ଚଳେଇବେ, ଏଇ କଥା ସେ ଦିନରାତି ବସିକି ଭାବୁଛନ୍ତି ।

ଏଠାରେ ଏତିକି କଥା ଜଣେଇ ଦିଆଯାଉଛି—"ଯେଉଁ ମହତ୍ ଆତ୍ମା ପ୍ରଭୁଙ୍କ ପାଦରେ ମନ ରଖିଛନ୍ତି, ସେମାନେ ସମସ୍ତେ ପ୍ରଭୁଙ୍କୁ ଖୋଜିବାକୁ ଲାଗିପଡ଼ନ୍ତୁ । ସେମାନେ କେବେହେଲେ ନିରାଶ ହେବେ ନାହିଁ । ସେମାନଙ୍କର ମନୋବାଞ୍ଛା, ନିଶ୍ଚିତ ପୂରଣ ହୋଇପାରିବ । କଷ୍ଟ କରିଥିଲେ କୃଷ୍ଣ ପାଇ, ଏଇ କଥା ପଦକର ମୂଲ୍ୟ ଅଛି । ତେଣୁ ଖୋଜିଲେ କୃଷ୍ଣ ପାଇବ । ଆରେ ମନ ବାଇ ! ବୁଝ ଏକଥାକୁ ହେତୁ ଦେଇ ।" ସେଇ ପ୍ରଭୁ ହେଉଛନ୍ତି ଶ୍ରୀଅରବିନ୍ଦ ଭଞ୍ଜ ଅର୍ଥାତ୍ ପ୍ରଭୁ ଶ୍ରୀ ଅନନ୍ତ କେଶରୀ । ଯାଙ୍କ ପାଖକୁ ଆସ ଓ ଆଲୋଚନା ବିଚାର ବିମର୍ଷ କର, ଆଗତ ପ୍ରଳୟ ମୁଖରୁ ଉଦ୍ଧାର ପାଇ ଯାଇ ଶାନ୍ତିରେ ରହିବ ।



### "ସମସ୍ତେ କାନ୍ଦୁଛନ୍ତି, କିନ୍ତୁ କାହାରି ଆଖିରୁ ତ ଲୁହ ବୋହୁନି"—ଏଇ ପଦକର ଗୂଢ଼ତତ୍ତ୍ୱ କ'ଣ ?

ଏଇ ପଦଟିକୁ ନାତି ଟୋକା, ଜେଜେ ବୁଢ଼ାଙ୍କୁ ପଚାରିଛନ୍ତି । ଜେଜେ ଶୁଣି କହିଥିଲେ—"ହଁ ତୁ ଠିକ୍ କଥା ପଦିଏ କହିଲୁ । ପ୍ରଭୁ, ପ୍ରଭୁ ସମସ୍ତେ ଡାକୁଛନ୍ତି । ନାନା ମତ, ନାନା ଗୋଷ୍ଠୀ, ନାନା ଦଳ, ନାନା ସଙ୍ଗଠନ, ନାନା ଈଶ୍ୱର ବିଶ୍ୱାସୀମାନଙ୍କ ମଧରେ, ଆଜିକାଲି କଳିକଜିଆ, ପରସ୍ପରକୁ କାଦୁଅ ଫୋପଡ଼ା କାମ ଚାଲିଛି । କିଏ କହୁଛି, ଏ ଆମର ଭଗବାନ ତ, ସିଏ କହୁଛି ନା ସିଏ ଭଗବାନ ନୁହଁନ୍ତି । କିଏ କହୁଛି ଆମ ଦଳକୁ ଆସ ତ, କିଏ କହୁଛି ସେ ଲୋକଗୁଡ଼ାକ ଠିକ୍ ନୁହଁନ୍ତି । କିଏ ତା' ଗୁରୁଙ୍କୁ ଭଗବାନ କହିଲାଣି ତ, କିଏ କାହା ସାଙ୍ଗ ବୁଦ୍ଧିରେ ପଡ଼ି, ସତ୍‌ସଙ୍ଗ କରି ହରବର ହେଲାଣି । ଖାଲି ପ୍ରତାରଣା, ଖାଲି ଠକାମୀ, ଖାଲି ଭଣ୍ଡାମୀ, ଖାଲି ବଦନାମୀ କଥାମାନ ସବୁ ପ୍ରଭୁଙ୍କ କାନରେ ବାଜିଲାଣି ।

ବୁଝିବାକୁ ଗଲେ ସମସ୍ତେ ଭଗବାନଙ୍କୁ ଡାକୁଛନ୍ତି, ଖୋଜୁଛନ୍ତି, କିନ୍ତୁ ସେ ଡାକିବାର ମାର୍ଗ ଠିକ୍ ହେଉନି । ସମସ୍ତେ ବଣା ହେଉଛନ୍ତି । ସମସ୍ତେ ଭ୍ରମରେ ପଡ଼ିଯାଉଛନ୍ତି । ଏ ନାଟ ତ, କଳିଦେବତା ସୃଷ୍ଟି କରୁଛନ୍ତି । କେହି ଏହାର ଭେଦ ପାଉନାହାନ୍ତି । ଭେଦିପାରିଲେ ସିନା, ଧରି ପାରିବେ । ଧରି ପାରିବାକୁ ସିନା, ସେମିତି ଯୋଗ୍ୟତା ବା ଆଧ୍ୟାତ୍ମିକ ଶକ୍ତି ଥିବା ଦରକାର । ଶକ୍ତି ତ ନାହିଁ, ତେଣୁ ଧରିବେ ବା କେମିତି ? ଖାଲି ଶୁଣାଶୁଣିରେ, ଖାଲି ଉପରେ ଉପରେ ଭାସୁଛନ୍ତି । ବହିରୁ ପଢ଼ିଲେ, କାହାକୁ କ'ଣ କିଏ କହିଦେଲା ଶୁଣି ପକାଇଲେ, ପ୍ରଭୁ ମିଳିଯିବେ ନାହିଁ । ପ୍ରଭୁଙ୍କୁ ପାଇବାକୁ ହେଲେ, ମନରେ ସେମିତି ଶ୍ରଦ୍ଧା ଓ ଭକ୍ତି ଥିବା ଦରକାର ।

ଶ୍ରଦ୍ଧା ନାହିଁ କି ଭକ୍ତି ମଧ୍ୟ ନାହିଁ । ଲୋକ ଦେଖାଣିଆ ମାଇକି ବଜେଇ, ଧୂପ ଝୁଣା ଦେଇ, ବାଜା ବଜେଇ, ଅରୁଆ ଭାତ ରାନ୍ଧଣା କରି, ଲୋକ ଜମେଇ ପକେଇ ବସିଲେ, ପ୍ରଭୁଙ୍କର ଆଶୀର୍ବାଦ ମିଳିଯାଏନି ବା ପ୍ରଭୁ କୃପା କରନ୍ତି ନାହିଁ ।

ତାଙ୍କୁ ପାଇବାକୁ ହେଲେ, ଏ ସବୁର ବନ୍ଦୋବସ୍ତ କ'ଣ ଦରକାର ! ଏସବୁ କାର୍ଯ୍ୟମାନଙ୍କୁ ପ୍ରଭୁ ପସନ୍ଦ କରୁନାହାନ୍ତି । ଯେଉଁଠି ଏପରି କାର୍ଯ୍ୟମାନ ହେଉଛି ବା ହେବ, ସେଇଠି କଳିଦେବତା ଦ୍ୱନ୍ଦ୍ୱ ପୁରେଇଦେବେ । ସେଠି ଆରମ୍ଭ ହୋଇଯିବ 'ବିନାଶ ପର୍ବ' । ତେଣୁ ଏସବୁ ଲୋକ ଦେଖାଣିଆ କାର୍ଯ୍ୟକ୍ରମ ଯେଉଁଠି ହେଉଛି, ତହିଁଠାରୁ ଅସଲି ଭକ୍ତମାନେ ବା ପରମ ଭକ୍ତମାନେ ଦୂରେଇ ରୁହନ୍ତୁ । କାରଣ ସେଇପରି ସ୍ଥାନମାନଙ୍କରେ ଆଗକୁ ମହାବିପଦ ସୃଷ୍ଟି ହୋଇଯାଇପାରେ । ଯିଏ କଥା ନ ମାନିବ, ସିଏ ଫଳ ପାଇବ । ଏଥିରେ ପ୍ରଭୁଙ୍କର ବା ଦୋଷ ରହିବ କିପରି ? ଏମିତି ଜେଜେ ବୁଢ଼ା, ନାତି ଆଗରେ ସବୁ ପ୍ରକାଶ କରିଥିଲେ ।

ଜେଜେ କହୁଥିଲେ—'ବୁଝିଲୁ ନାତି !' ଏ ଲୋକଗୁଡ଼ା ସମସ୍ତେ କାନ୍ଦୁଛନ୍ତି; କିନ୍ତୁ ଲୁହ ବୋହୁନି । ଦେଉଳକୁ ଯିବାପାଇଁ ଚାରିଆଡୁ ବାଟ ପଡ଼ିଛି । ଯିଏ ଯେଉଁବାଟେ ଯାଇପାରିବ, କାହାପାଇଁ ଧରାବନ୍ଧା ନାହିଁ; କିନ୍ତୁ ଠିକ୍ ବାଟ ଦେଇ ଗଲେ, ଅକ୍ଳେଶରେ ପ୍ରଭୁଙ୍କୁ ଯଦି ପାଇପାରିବା, ତେବେ ଅଣାବଣା ରାସ୍ତାରେ ଯିବା କାହିଁକି ? ଯାହାକୁ ତତ୍ତ୍ୱରେ କୁହାଯାଏ—ଉଚିତ୍ ମାର୍ଗ ।

ତେଣୁ ମୋ ମତରେ ସମସ୍ତେ ମାର୍ଗଟିକୁ ଧରିବା ପାଇଁ ଖୋଜନ୍ତୁ, ଆଉ ବାଟବଣା ହୁଅନ୍ତୁ ନାହିଁ, କାରଣ ସମୟ ଖୁବ୍ କମ୍ ହାତରେ ଅଛି । ବିନାଶ ପର୍ବର ସମୟ ପାଖେଇ ଆସୁଛି । ତେଣୁ ଭକ୍ତମାନେ ଯଦି ଶୀଘ୍ର ଏକଜୁଟ୍ ନ ହୁଅନ୍ତି, ତେବେ ଅସୁବିଧା ହେବ ସେହିମାନଙ୍କର । ପ୍ରଭୁଙ୍କର କିଛି ଅସୁବିଧା ହେବାର ନାହିଁ ।

ଆଉ ତୁ କ'ଣ କହୁଛୁ ଟିକେ କହୁନୁ, ଏଇକଥା ନାତି ଟୋକାକୁ ପଚାରିଲେ ?

ନାତି ଟୋକା ତ, ଆଜିକାଲି ଜଣେ ପୋଖତ ବୃଦ୍ଧ ଭଳିଆ ହେଇ ସାରିଲାଣି, ସବୁ ଜେଜେଙ୍କଠାରୁ ଶୁଣି ଶୁଣି । ସେ ସେଠୁ କହିବାକୁ ଆରମ୍ଭ କଲା—"ଜେଜେ ! ତୁମେ ଯେଉଁ କଥାଗୁଡ଼ିକ ଶୁଣାଇଲ, ମୁଁ ସବୁ ବୁଝିପାରୁଛି । ଯଦି ସମସ୍ତେ ଠିକ୍ ମାର୍ଗକୁ ପାଇଯିବେ, ତେବେ ବିହନ ବଛାବଛି ହେବେ ଆଉ କାହିଁକି ? ସବୁତ ବିହନ ହୋଇଯିବେ ।"

ତେବେ କଳି ଦେବତାଙ୍କର ଯୋଜନା କ'ଣ ସବୁ ପଣ୍ଡ ହୋଇଯିବ ? ସେ ପରା ବର ଆଣିଛନ୍ତି—ବିହନଗୁଡ଼ିକୁ ବାଛି ବାଛି ପ୍ରଭୁଙ୍କ ଲୀଳାଖେଳା ପାଇଁ ଛାଡ଼ିଯିବେ ବୋଲି !

ମୁଁ ଯାହା ଦେଖୁଛି, "ଜେଜେ ! ତୁମର ମୁଣ୍ଡ ବାଇଆ ହେଲାଣି । ଏ ସବୁ ଗୁପ୍ତ କଥା । ତୁମେ ଲୋକଙ୍କୁ ସବୁ ଶୁଣେଇ ଦେଉଛ କାହିଁକି ? ଯିଏ ଯାହା କରୁଛି କରୁ, ସେଥିରେ ଆମର ବା କ'ଣ ଦରକାର ଅଛି ?"

ଜେଜେଙ୍କର ହଠାତ୍ ସ୍ମରଣ ଆସିଗଲା । ସେଠୁ ନାତିକୁ କହିଲେ—"ହଁରେ ବାପା ! ମୋର ତ ମନ ବିଚଳିତ ହୋଇଗଲାଣି, ସେଇ ଭାବ ବିନୋଦିଆ ପାଇଁ । ଟିକେ ତ ଦର୍ଶନ ଦେଉନାହଁ, କୁଆଡ଼େ କୁଆଡ଼େ ଖାଲି ବୁଲୁଚି ? ହେଉ କେବେ ଦେଖାଦେବ ହେଉ, ମୁଁ ଆଉ କ'ଣ କରିପାରିବି, ଖାଲି ତୋହରି ଆଗରେ ତା' ଗୁଣ କୀର୍ତ୍ତନ ଏଇମିତି ସନ୍ଧ୍ୟାବେଳେ, ଘଡ଼ିଏ ଘଡ଼ିଏ କରୁଥିବି !"

ଏଇମିତି କଥାବାର୍ତ୍ତା ସରିଲା ବେଳକୁ ରାତି ଦଶଟା ବାଜି ଯାଇଥାଏ । ମା' ଡାକିଲେ, ଭୋଜନ ପାଇଁ । ଜେଜେଙ୍କ ହାତକୁ ବଙ୍କୁଲି ବାଡ଼ିଟି ଧରେଇ ଦେଇ, ନାତି ଚାଲିଲେ ରୋଷେଇ ଘରକୁ ।

ରୋଷେଇ ଘରେ ବସି, ଦିହେଁ ଭାତ ଥାଳି ପାଖରେ ପାଣି ଗିଲାସେ ରଖି, ଟିକେ ଆଖି ବୁଜିଦେଇ, ପ୍ରଭୁଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରିବା ପ୍ରଭୁଙ୍କୁ ଆଗେ ଖୋଇଦେଇ, ତା'ପରେ ଭାତଗୁଣ୍ଡାକୁ ନିଜ ନିଜ ପାଟି ଭିତରକୁ ନେଲେ ।

ପ୍ରଭୁଙ୍କ ଉଦ୍ଦେଶ୍ୟରେ ଟେକି ଦେଇଥିବା ଭାତଗୁଣ୍ଡାଟି, ଯଥା ସ୍ଥଳରେ ଆସି ପହଞ୍ଚି ଯାଇଥିଲା । ଧନ୍ୟ ଧନ୍ୟରେ ଭକ୍ତ !



## "ଆସୁଅଛି ଧୂଳିଝଡ଼ ଲୋ, ପୁଲ ବଉଳ ବେଣୀ ।"—ଏହାର ଅର୍ଥ କ'ଣ ?

ହଁ ଧୂଳିଝଡ଼ ଉଠିଆସୁଛି । ସେ ଧୂଳି ଆଖି ଭିତରେ ପଶିଯିବ, ସେଠୁ ଆଖି ପୋଡ଼ିବ । ଯଦି ଅନେଇଥିବ ତ ଧୂଳି ଉଡ଼ି ପଶିଯିବ, ଆଉ ଯଦି ଆଖି ବୁଜିଦେବ, ତେବେ ଧୂଳି ତ ପଶିପାରିବ ନାହିଁ । ସେ ଧୂଳି ତା' ବାଟରେ ଚାଲିଯିବ ।

ଆଗକୁ ପ୍ରବଳ ଭାବରେ ଧୂଳି ଉଠିବାର ସୂଚନା ସବୁ ମିଳୁଛି । କେମିତି ଆଖି ବୁଜିଦେଲେ ଧୂଳି ପଶି ପାରିବ ନାହିଁ, ସେଇ କାଇଦା ସିନା ଆଗରୁ ଜାଣିଥିଲେ, ଯଥା ସମୟରେ ପ୍ରୟୋଗ କରିପାରିବ । ନୋହିଲେ କ'ଣ ହେବ ? ଏ କଥାଟିକୁ ବିଚାର ପରିସରକୁ ନିଅ, ତେବେ ସିନା ତତ୍ତ୍ୱ ପାଇବ ।

ସକାଳେ, ସନ୍ଧ୍ୟାରେ ଯେତେବେଳେ ଟିକେ ଟିକେ ସମୟ ମିଳୁଛି, ଏହି ଆଖି କିପରି ବୁଜାଯାଏ, ଟିକେ ଟିକେ ଅଭ୍ୟାସ କର । ଅଭ୍ୟାସ କରୁ କରୁ ଆଖି ବୁଜିବାର କାଇଦାଟି ମାଲୁମ୍ ହୋଇଯିବ । ତା'ପରେ ଯେତେବେଳେ ଧୂଳି ଝଡ଼ ଆସିବ ତା' ବାଟରେ ସିଏ ଚାଲିଯିବ । ଆଖି ପାଖକୁ ମୋଟେ ଆସିପାରିବ ନାହିଁ ।

**ତର୍ଜମା**—ଏଇ ଆଖି ବୁଝିବାର ଅର୍ଥ ସକାଳେ ସନ୍ଧ୍ୟାରେ ଆଖିବନ୍ଦ ରଖି ଧ୍ୟାନଯୋଗରେ ବସିରୁହ, ପ୍ରଭୁଙ୍କର ଦେବୀ ଯୋଗମାୟାଙ୍କର ଆଶୀଷ ପାଇବ ଓ ରାତିରେ ଶୟନ ଅବସ୍ଥାରେ ବାର୍ତ୍ତା ଶୁଣିବାକୁ ପାଇବ ସ୍ୱପ୍ନରେ ଓ ଜାଗରଣରେ ୨୦୦୬ ପରେ ।



## "ଶ୍ରାବଣ ମାସରେ ତାତି, ଦେହ ଜଳି ଯାଉଅଛି । ସଜନୀ ଲୋ !—ଏ କି ସଙ୍କେତ ଦେଉଅଛି ?"

ଗୋଟିଏ ଗୋପୀ ଅନ୍ୟ ଏକ ଗୋପୀକୁ କହୁଛି—"ଆଲୋ ସଜନୀ ! ଏ କି କଳିକାଳ ହେଲା ଲୋ, ଶ୍ରାବଣ ମାସରେ ଏ ଖରା, ଏ ଗରମ, ଏ ତାତି ପବନ, ମୋ ଦେହକୁ କଳେଇଦେଲା ଭଳିଆ ଲାଗୁଛି ?"

ଶ୍ରାବଣ ମାସରେ ଧାରା ବର୍ଷିବା କଥା । ଇନ୍ଦ୍ର ଦେବତା ଆମ ସମସ୍ତଙ୍କ ମଙ୍ଗଳ ପାଇଁ ଠିକ୍ ସମୟରେ ଜଳ ବର୍ଷଣ କରି ଚାଷୀ କୁଳଙ୍କୁ ଖୁସିରେ ରଖନ୍ତି; କିନ୍ତୁ ଏବେ ଏ କି ଦୃଶ୍ୟ ଦେଖିବାକୁ ମିଳୁଛି, ବାହାରେ ଘଣ୍ଟାଏ ଛିଡ଼ା ହେବାପାଇଁ ଏ ତାତି ପବନ ଓ ଖରାକୁ ଡର ମାଡୁଛି ?"

ଏକଥା ଶୁଣି, ଅନ୍ୟ ସଖୀଟି କହିବାକୁ ଆରମ୍ଭକଲା—"ମିତଣୀ ! ପୂର୍ବ ଜନ୍ମରେ ତ, ଯେତେବେଳେ ଆମେ ପ୍ରଭୁଙ୍କ ସଙ୍ଗେ ଲୀଳା ଖେଳା କରୁଥିଲେ, ଇନ୍ଦ୍ର ତ କୋପ କରି ସାତଦିନ ସାତରାତି ଢାଳିଥିଲେ, ଏ କଥା କ'ଣ ସବୁ ଭୁଲି ଗଲୁଣି କି ? ସେତେବେଳେ ପ୍ରଭୁଙ୍କୁ ଚିହ୍ନିପାରି, ମଣିଷ ଜନ୍ମ ନେଇଛନ୍ତି ବୋଲି, ଇନ୍ଦ୍ର ଆସି ମୁଣ୍ଡିଆଟିଏ ମାରି ଚାଲି ଯାଇଥିଲେ ।"

ସେତେବେଳେ ପ୍ରଭୁ ଇନ୍ଦ୍ରଙ୍କୁ କହିଥିଲେ—"କଳିଯୁଗ ଶେଷ ବେଳକୁ, ଏଇମିତି ସାତଦିନ, ସାତରାତି ଢାଳିବ । ପୁଣି ଶ୍ରାବଣ ମାସରେ ମାଟି ଫାଟିବ ଓ ବୈଶାଖ ମାସରେ ଲଗାତାର ବର୍ଷି, ଯେପରି ପୋଖରୀରେ କଇଁଫୁଲ ଫୁଟିବ, ସେଇ ରକମର ପାଳନ କରିବ । ପୁଣି ମଧ୍ୟ ସୂର୍ଯ୍ୟ ଦେବଙ୍କୁ କହିଥିଲେଯେ ଇନ୍ଦ୍ରଙ୍କ ଯୋଜନାକୁ ଫଳବତୀ କରିବା ପାଇଁ, ତୁମେ ମଧ୍ୟ ଧାରା ଶ୍ରାବଣ ମାସରେ, ତୁମର କିରଣ ଭୂ-ପୃଷ୍ଠକୁ ୪ ଗୁଣା ବୃଦ୍ଧି କରି ଛାଡ଼ିବ, ଯେପରିକି ଅସହ୍ୟ ଉତ୍ତାପ, ଅସହ୍ୟ ତାତି, ମାନବ ସମାଜ, ପଶୁପକ୍ଷୀ, ଜୀବଜନ୍ତୁ ସମସ୍ତଙ୍କୁ ବ୍ୟସ୍ତ କରି ପକାଉଥିବ ।"

"ବର୍ତ୍ତମାନ ସେଇ ପୂର୍ବର ପରିକଳ୍ପିତ ସମୟଟି ଆସି ପହଞ୍ଚିଲାଣି ଲୋ ସଜନୀ ! ଟିକେ ପୂର୍ବ ଜନ୍ମର ସ୍ମୃତିକୁ ମନକୁ ଆଣେ ଏବଂ ପ୍ରଭୁଙ୍କ ପାଦପଦ୍ମରେ ମନକୁ ରଖ । ଦେବୀ ଯୋଗାମାୟା, ସବୁ ରାତିରେ ଶୋଇଥିବା ବେଳେ ତୋତେ ଜଣେଇ ଦେଇ ଚାଲିଯିବେ ।"

"ହଁ, ମୁଁ ତ ମା'ଙ୍କର କେତୋଟି ନିର୍ଦ୍ଦେଶ ସ୍ୱପ୍ନରେ ପାଇ ସାରିଲିଣି । ଏଇ କଥା ପରା, ଗତକାଲି ମୋ ବାବୁଙ୍କ ଆଗରେ କହୁଥିଲି ।" ତା'ପରେ ଦିହେଁ ଏଇ ରକମର କଥାବାର୍ତ୍ତା ହୋଇସାରି, ଘରେ ରଖିଥିବା କଳାକାହ୍ନୁଙ୍କ ପ୍ରତିମା ପାଖରେ ବସି, 'କଳ୍କୀ ମହାମନ୍ତ୍ର'ଟିକୁ ବୋଲିବାକୁ ଲାଗିଲେ ।

ସେମାନଙ୍କର ଆକୁଳ ପ୍ରାର୍ଥନା ପ୍ରଭୁଙ୍କ କର୍ଣ୍ଣରେ ବାଜିଲା । ପ୍ରଭୁ ଶ୍ରୀ ଅନନ୍ତକେଶରୀ, ଯୋଗାମାୟାଙ୍କୁ ଧରି ସେଠାରେ ପହଞ୍ଚି ଯାଇଥିଲେ । ଅଲକ୍ଷ୍ୟରେ ଆଶୀର୍ବାଦ ପ୍ରଦାନ କରି, ସେମାନଙ୍କର ନୈବେଦ୍ୟ ଗ୍ରହଣ କରି, ଖୁସି ମନରେ ସେଇ ଜାଗାଟିକୁ ଦେଖି ଆସିଥିଲେ ।

—ଏହିପରି ଗୁପ୍ତଲୀଳା ଚାଲିଛି ।



## "ମଣିଷ ଜୀବନଟି ପାଣି ଫୋଟକା ଭଳିଆ"— ଏହାର ତାତ୍ତ୍ୱିକ ଅର୍ଥଟି କ'ଣ ?

ବର୍ଷା ହେଲେ ବା ବର୍ଷାଦିନେ ପାଣିଫୋଟକା ଦେଖିବାକୁ ମିଳେ । ପିଲାମାନେ କାଗଜରେ ଡଙ୍ଗା ତିଆରି କରି ଭସାନ୍ତି । ପାଣି ଫୋଟକା ଭାସି ଯାଆନ୍ତି, କିଛିକ୍ଷଣ ପରେ ପୁଣି ଫାଟି ଯାଆନ୍ତି । ତା'ପରେ ଆଉ ଫୋଟକା ନ କୁହାଯାଇ, କୁହାଯାଏ ଜଳବୁନ୍ଦା ।

ମଣିଷ ଜୀବନଟି ଏହି ପାଣି ଫୋଟକା ସଙ୍ଗେ ସମାନ ବୋଲି ତତ୍ତ୍ୱରେ ବୁଝାଯାଇଛି । ଆଜିକାଲି ସେ ତତ୍ତ୍ୱ ବୁଝୁଛି କିଏ ? ସମସ୍ତେ ତ ଆଧୁନିକତା ନାଁରେ ଫେସନ ଯୁଗରେ ଫେସନ ଢଙ୍ଗରେ ଅର୍ଥ ବାହାର

କଲେ । ଋଷି, ମୁନି, ସନ୍ଥ, ସାଧକ, ମହାପୁରୁଷମାନଙ୍କ ବାକ୍ୟକୁ ଅବଜ୍ଞା କଲେ । ତେଣୁ ସମାଜ ଆଜି ହେଲା ଧର୍ମଛଡ଼ା । ପାପଭାରା ସହି ନ ପାରି ଆଜି ବସୁମତୀ ରୋଦନ କରୁଛି ଅର୍ଥାତ୍ କାନ୍ଦୁଛି ।

ମଣିଷ ଶରୀର ମଧ୍ୟରେ ଥିବା ହୃଦ୍‌ଯନ୍ତ୍ର କ୍ରିୟା ବନ୍ଦ ହୋଇଗଲେ, ଅର୍ଥାତ୍ ଅନ୍ୟ ଅର୍ଥରେ ପବନ ଯାଉଛି ଓ ପୁଣି ପବନ ଆସୁଛି, ଯେଉଁ ସୂକ୍ଷ୍ମ ପଦାର୍ଥଟି ଧପ୍ ଧପ୍ ହୋଇ ଚାଲିଛି, ସେଇଟି ହଠାତ୍ କିନା ରହିଗଲେ, ସବୁ ସରିଲା । ପାଣି ଫୋଟକା ଫାଟିଯାଏ, ମୁହୂର୍ତ୍ତକ ମଧ୍ୟରେ । ସେଇମିତି ମୁହୂର୍ତ୍ତକ ମଧ୍ୟରେ ଯଦି ସେଇ ସୂକ୍ଷ୍ମ ପଦାର୍ଥଟି ଥପ୍ ହୋଇଗଲା, ତେବେ ଜାଣ ଯେ ପାଣି ଫୋଟକାଟି ଫାଟିଗଲା ।

ମଣିଷ କେବଳ ଲୋଭ ଓ ମାୟାର ବଶୀଭୂତ ହୋଇ ଏ ପାଣି ଫୋଟକା ପରି କ୍ଷଣିକ ସୃଷ୍ଟିକୁ କ'ଣ ଯେ ମନେ କରୁଛି, ତାହାର ବର୍ଣ୍ଣନା କରିବାକୁ ଭାଷା ନାହିଁ ।

ସ୍ରଷ୍ଟାଙ୍କୁ ହେୟଜ୍ଞାନ କରୁଛି । ସବୁ ମୁଁ କରୁଛି ବୋଲି କହି ଚାଲିଛି । 'ମୁଁ'କାର ଶବ୍ଦ କହିଦେଲେ ଆସିଯାଏ ଅହଂକାର ଭାବ, ଯେତେବେଳେ କହିବସିବ—''ଏ ସବୁ ତୋର, ଏ ଧନ ସମ୍ପତ୍ତି ତୋର, ଏ ଛୁଆପିଲା ତୋର, ଶେଷକୁ କହିବ ଏ ଜୀବନଟି ମଧ୍ୟ ତୋ'ର ତେବେ ପାଇଁ ପାଇବ ଜ୍ୟୋତିଦର୍ଶନ । ପ୍ରଭୁଙ୍କର ଆଶୀର୍ବାଦ ପାଇବ । ଆତ୍ମା ଓ ପରମାତ୍ମାଙ୍କର ମିଳନ ହେବ ।

ସେଇଥିପାଇଁ ଆଗରୁ କୁହାହୋଇଛି—

'କାହିଁକି ଆସିଛୁ ମନ କିସ ନେବା ପାଇଁରେ ।
ଆସିଅଛୁ ଲଙ୍ଗଳା ତୁ ଯିବୁ ଶୂନ୍ୟ ହୋଇରେ !'

ଜୀବ ଗଲାବେଳେ ଖାଲି ହାତରେ ଯିବାକୁ ପଡ଼େ । କେହି କିଛି ସଙ୍ଗରେ ପେଡ଼ିପୁଟୁଳା ବାନ୍ଧି ନେଇ ଯାଇପାରନ୍ତି ନାହିଁ ।

ପୁଣି ଆହୁରି କେତୋଟି ପଙ୍କ୍ତି—

''ଯାହାକୁ କହୁ ମୋର ମୋର । ଜୀବ ଗଲାବେଳେ କେ ନୁହେଁ ତୋର । ଆସିଛୁ ଏକା ଯିବୁ ତୁ ଏକା ।''



## 'କ'ଣ କଲେ ଶ୍ରୀ ନିରାକାର ପ୍ରସନ୍ନ ହୋଇବେ ?'—ଏଇ କଥାଟି କୁହନ୍ତୁ

ଏଇ ପ୍ରକାରେ କରିବାକୁ ହେବ, ମନ୍ତ୍ର—ଓଁ ହ୍ଲୀଂ । ଏକାକ୍ଷର ଜପ କଲେ, ପରଂବ୍ରହ୍ମ ଦୃଶ୍ୟ ହୁଅନ୍ତି । ଶୂନ୍ୟରୁ ଶବ୍ଦବ୍ରହ୍ମ ଶୁଣା ଯାଆନ୍ତି ।

"ଶୂନ୍ୟରେ ଶୂନ୍ୟ ମିଶାଇ ପରମକୁ ଜାଗ ।
ଅଣ ସାଧନା ସାଧିଲେ ସିଦ୍ଧ ହେବ ଯୋଗ ।
ଅମାପ ମାପିବୁ ତୁହି ଅଜପା ଜପିବୁ ।
ଅରୂପ ମଧ୍ୟରେ ନେଇ ଧ୍ୟାନ ଲଗାଇବୁ ।
ଅଜପ ସୂତ୍ର ଲାଗିବ ନ ଟଳିବ ଧ୍ୟାନ ।
ତେବେ ସିନା ନିରାକାର ହୋଇବେ ପ୍ରସନ୍ନ ।
ବ୍ରହ୍ମକୁ ଦେଖିଲେ ଭୟ ତୁଟିଯିବ ତୋର ।
ଏ ମନ୍ତ୍ରେଣ ଅଜ୍ରାମର ହୋଇବ ଶରୀର ।
ଜ୍ୟୋତି ରୂପେ ଦିଶୁଅଛି ଜୀବ ରୂପେ ସେହି ।
ପରମ ରୂପେ ଖେଳନ୍ତି ନ ଜାଣନ୍ତି କେହି ।
ପ୍ରେମ ପାଦ ଜଗି କାମନାକୁ ବନ୍ଦୀକର ।
ନ ତୁଟିବ ବନ୍ଧ ତୁ ଯେ ହୋଇବୁ ଅମର ।"

**ସରଳ ବ୍ୟାଖ୍ୟା**—ପ୍ରଧାନ ଶିଷ୍ୟ ରାମଦାସଙ୍କୁ କୁହାଯାଇଥିଲା—'ପ୍ରିୟ ରାମ ! ନିରାକାର ପରଂବ୍ରହ୍ମଙ୍କର ସନ୍ନିଧ ପାଇଁ ଏହିପରି କରିବୁ । ନିଜ ଶରୀର ମଧ୍ୟରେ ପରଂବ୍ରହ୍ମଙ୍କର ସତ୍ତା ଉପଲବ୍ଧି କରିବୁ । ଜୀବ ଓ ପରମ ଏହାର ଅର୍ଥଟି ହେଉଛି—ନିଜ ଶରୀର ବା ନିଜ ପିଣ୍ଡକୁ ଜୀବାତ୍ମା କୁହାଯାଏ, ଏହାରି ମଧ୍ୟରେ ଥିବା ସୂକ୍ଷ୍ମ ଜୀବଟିକୁ ପରମାତ୍ମା ବୋଲି ବୁଝିବୁ । ପରମାତ୍ମା ଶରୀର ମଧ୍ୟେ ନ ରହିଲେ ଜୀବ ବଞ୍ଚିପାରେନା, ସବୁରି ଘଟରେ ନାରାୟଣ ଅଛନ୍ତି । ତେଣୁ କୁହାଯାଇଛି—

'ସବୁରି ଘଟେ ନାରାୟଣ, ଦେଖି ସନ୍ତୋଷ ଭଗବାନ ।' ସିଏ ପ୍ରତି ଘଟ୍‌ରେ ରହିଛନ୍ତି । ପ୍ରାଣୀକି ଭଲ ମନ୍ଦ କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦେଉଛନ୍ତି । ତାଙ୍କର ବିନା ନିର୍ଦ୍ଦେଶରେ ଏ ଶରୀରର କୌଣସି ଅଙ୍ଗ ଚଳିପାରିବ ନାହିଁ ଅର୍ଥାତ୍ ଅଚଳ ହୋଇଯାଏ ।

ତାଙ୍କ ନିର୍ଦ୍ଦେଶ ବିନା ହାତ ଚଳିପାରେନା, କି ଗୋଡ଼ ମଧ୍ୟ ଗୋଟିଏ ପାହୁଣ୍ଡରୁ ଅନ୍ୟ ଏକ ପାହୁଣ୍ଡ ପକେଇବାକୁ ସମର୍ଥ ହୁଏନା । ତେଣୁ ମଣିଷର ଜୀବନ ଯିବା ସମୟେ କୁହାଯାଇଥିଲା—

'ଜୀବ ପରମ ଦୁହିଁଙ୍କ ଏ ବିଚାର ।
ଚାଲ ଆମେ ଏ ଘଟୁ ହୋଇଯିବା ବାହାର ।'

ଏଠାରେ ବୁଝାଇ ଦିଆଯାଉଛି, ଏଇ କଥାଟିକେ ମନେ ରଖିଥା—ଜୀବ ସଙ୍ଗେ ପରମ ବା ପରମଆତ୍ମା ମିଳିତ ହୋଇ ବାହାରି ଯିବାକୁ ମନେକଲେ, ତେବେ ଯାଇଁ ମନୁଷ୍ୟର ମୃତ୍ୟୁ ହୁଏ । ତେଣୁ ସେଥିପାଇଁ କୁହାଯାଇଛି, ଜପ ତପ ସାଧନା କଲେ ନିଜ ଶରୀର ମଧ୍ୟେ ଥିବା ନାରାୟଣଙ୍କର ସତ୍ତାକୁ ତ୍ରିକୁଟକୁ ଆଣି ଜ୍ୟୋତିରୂପେ ଦର୍ଶନ କରିବ । ଲୋକେ ତ ବଣା ହୁଅନ୍ତି ବା ହେଉଛନ୍ତି । ନିଜ ପିଣ୍ଡ ମଧ୍ୟରେ ଥିବା ପରମ ସତ୍ତାକୁ ଦେଖିବା ପାଇଁ ସେମିତି ପ୍ରଗାଢ଼ ଭକ୍ତି ଓ ଶ୍ରଦ୍ଧା ସହ ମନ୍ତ୍ରଟିକୁ ଜପିଲେ, ନିଜ ଆଖି ଆଗରେ ଯାହା ଚାହିଁବେ, ସେ ସବୁ ଦେଖିପାରିବେ ବା ଦୃଶ୍ୟ ହୋଇଯିବ । ନିଜ ମସ୍ତକରେ ଲଲାଟ ଚକ୍ରରେ ଥିବା ତୃତୀୟ ନୟନଟି ଖୋଲିବ । ଦୁଇଟି ଆଖି ଅଛି ବୋଲି ସମସ୍ତେ ଜାଣନ୍ତି; କିନ୍ତୁ ପ୍ରକୃତରେ ସମସ୍ତଙ୍କର ତିନୋଟି ଆଖି ଅଛି । ସେହି ତୃତୀୟ ନୟନଟିକୁ କେହି ବ୍ୟବହାର କରିପାରନ୍ତି ନାହିଁ । ଯେପରି ନିଜ ନିଜ ଘରେ ବାସନ କୁସନ ବହୁତ ଥାଏ, ସୁଟ୍‌କେଶ୍‌ରେ ସାଇତା ହୋଇ ରଖାଯାଇଥାଏ । କେତେବେଳେ ଦରକାର ପଡ଼ିବ ତ ବାହାରିବ, ନୋହିଲେ ସେଇମିତି ସବୁଦିନ ପାଇଁ ରହିଥିବ ।

ଠିକ୍ ସେଇପରି କଥା ମଧ ମନୁଷ୍ୟ ଶରୀରର ଏ ତୃତୀୟ ନୟନଟିକୁ ଜାଣ । ଏଇଟି ଯାହାର ଫିଟିଯିବ, ସେ ବିଶ୍ୱର ସବୁ କଥାକୁ ଜାଣି ପାରିବ ।

ଶିଷ୍ୟ ରାମଚନ୍ଦ୍ରଙ୍କୁ କୁହାଯାଇଥିଲା—"ଅମାପ ଜପିବୁ, ଅର୍ଥାତ୍ କେତେ ଜପ କଲୁ ହିସାବକୁ ନବୁନୁ । ଅରୂପ ମଧ୍ୟରେ ମନ ଲଗାଇବୁ । ପାଞ୍ଚମନ ଓ ପଚିଶ ପ୍ରକୃତି ଏ ଦେହ ଭିତରେ ସମସ୍ତଙ୍କର ଅଛି । ତେଣୁ ଏହି ପାଞ୍ଚ ଓ ପଚିଶକୁ ଏକ କରି, ଏକ ଧ୍ୟାନରେ, ପ୍ରଭୁଙ୍କ ପାଦରେ ଶରଣ ପଶିବୁ । ତେବେ ଜ୍ୟୋତି, ଛାୟା, ଅବାଡ଼ ବାଡ଼ ଇତ୍ୟାଦି ସାଧନାରେ ଅନୁଭବ କରିବୁ ।

ଯେତେବେଳେ ବ୍ରହ୍ମଙ୍କ ଦର୍ଶନ, ଅର୍ଥାତ୍ ନିରାକାର ତୋ ସାମନାରେ ସାକାର ରୂପ ନେବେ, ସେତେବେଳେ ତୋର ସମସ୍ତ ଭୟ ତୁଟିଯିବ । ତୋ ଶରୀର ଅଜ୍ରାମର ଅର୍ଥାତ୍ ଅମର, ଯାହାର ମରଣ ନାହିଁ, ସେପରି ହୋଇଯିବ ।

—ପୁଣି କ'ଣ ହୋଇଛି ?

ପ୍ରତି ଘଟରେ ବା ପ୍ରତି ଦେହରେ ପରମ ଖେଳୁଛନ୍ତି ଅର୍ଥାତ୍ ଭଗବାନ ଖେଳ କରୁଛନ୍ତି । ତାଙ୍କୁ କେହି ଦେଖିପାରୁ ନାହାନ୍ତି ।—"ତୁ ମନରେ ପ୍ରେମ ଭାବ ଆଣେ; କିନ୍ତୁ କାମନାକୁ ବନ୍ଦୀ କର । ଅର୍ଥାତ୍ କାମଶକ୍ତିକୁ ନିଜ ଆୟତ୍ତ ମଧ୍ୟରେ ରଖ । ମଣିଷ ଶରୀରର ସବୁଠାରୁ ଅତି ମୂଲ୍ୟବାନ ପଦାର୍ଥଟି ହେଲା—ଶୁକ୍ର ବା ବୀର୍ଯ୍ୟ । ଏହାକୁ କେବେ କ୍ଷୟ କରନା ଅର୍ଥାତ୍ ନଷ୍ଟ କରିବୁ ନାହିଁ ।"

'ନ ବୁଡ଼ିବ ବନ୍ଧ ତୁ ଯେ ହୋଇବୁ ଅମର ।'—ଏଇ ଧାଡ଼ିଟିର ଅର୍ଥ ହେଉଛି ତୋ'ର ବନ୍ଧ ବୁଡ଼ିବ ନାହିଁ । ବନ୍ଧ ଭାଙ୍ଗିଗଲେ ବନ୍ୟା ଆସିବ, ପ୍ରଳୟ ହେବ । 'ପ୍ରଳୟ ହେବ'ର ଅର୍ଥ ଶରୀରଟି ନଷ୍ଟ ହେବାକୁ ବୁଝାଯାଉଛି । ତେଣୁ ମୋଟା ମୋଟି ଭାବରେ ବୁଝିବାକୁ ହେବ ଯେ, ବୀର୍ଯ୍ୟକୁ ଧରି ରଖିଲେ, ତୁ ସାଧନା ପଥରେ ସିଦ୍ଧି ଲାଭ କରିପାରିବୁ ।

ଶିଷ୍ୟ ରାମଚନ୍ଦ୍ର ପଚାରିଥିଲେ—କ'ଣ କଲେ ମୋ ଶରୀର ଅଜ୍ରାମର ବା ମୋ ଆତ୍ମା ଅମର, ବା ଆତ୍ମାର ମୋକ୍ଷ, ବା ମୋ ଜୀବ କିପରି ପରମଆତ୍ମାଙ୍କୁ ଭେଟି ଉଦ୍ଧାର ପାଇବ ? ଏଇକଥା କୁହନ୍ତୁ ।

ତାଙ୍କୁ କୁହାଯାଇଥିଲା—ଏଇ ସବୁ କଥାଗୁଡ଼ିକ । ଏଠାରେ ଏହି କଥାଗୁଡ଼ିକର ଉପସ୍ଥାପନା କରାଯିବାର ଉଦ୍ଦେଶ୍ୟ—ପରମ ଭକ୍ତମାନେ ଏହିପରି ଟିକେ ଜପ ତପ କରି, ତୃତୀୟ ନୟନଟିକୁ ଖୋଲିବାକୁ ଚେଷ୍ଟା କରନ୍ତୁ ।



## 'ଗର୍ବ ଗଞ୍ଜନ ଗିରିଧାରୀ, ସିଏ ତ ନୁହଁନ୍ତି କାହାରି ।'

ଦିନେ ଗୋଟିଏ ମୂଷା, ପ୍ରଭୁଙ୍କୁ ପ୍ରାର୍ଥନା କରି କହିଲା—"ପ୍ରଭୁ ! ମୋତେ ତ ମୂଷା ଜନ୍ମ ଦେଇଛ । ଏ ଗାତରେ ରହି ଜୀବନ ବିତାଉଛି । ମୋ ମନ ହେଉଛି, ଗୋଟିଏ ସିଂହ ହେବାକୁ । ସିଂହ ହେଲେ ନା ଏ ଜୀବଜନ୍ତୁଙ୍କ ଉପରେ ମୁଁ ରାଜା ହୋଇଯିବି, ଭାରି ସୁଖ ମିଳିବ । ଏବେ ଯେମିତି ଆପଣଙ୍କୁ ମନେ ପକାଉଛି; ସେତେବେଳେ ପୁଣି ଆଉରି ଜୋର୍‌ରେ ସ୍ମରଣ ରଖିବି ।"

ପ୍ରଭୁ ମୂଷାର ବିନମ୍ର ଭାବ ଦେଖି ଦୟାକଲେ । କହିଲେ—"ଏ ଜନ୍ମରେ ତୋର ମନୋଭିଳାଷ ପୂରଣ ହେବ ନାହିଁ; ଆରଜନ୍ମକୁ ତୁ ଗୋଟିଏ ସିଂହ ହେଇଯିବୁ; କିନ୍ତୁ ଯଦି ମତେ ସ୍ମରଣ ରଖିବାରେ ହେଳା କରିବୁ; ପୁଣି ତୋର ସେହି ମୂଷା ରୂପ ହୋଇଯିବ; ସେତେବେଳେ ଆଉ ଦୁଃଖ କରିବୁ ନାହିଁ ।"

ଏହା ଶୁଣି ମୂଷା କହିଲା—ହଉ । ସତକୁ ସତ ମୂଷାଟି ଯଥା ସମୟରେ ବୁଢ଼ା ହୋଇ ମରିଗଲା ଓ ପରଜନ୍ମରେ ପ୍ରଭୁଙ୍କର ବାକ୍ୟ ଫଳିଲା; ଅର୍ଥାତ୍ ସେ ଗୋଟିଏ ସିଂହୀଠାରୁ ଜନ୍ମ ନେଲା । ଜନମ ହୋଇ ଧୀରେ ଧୀରେ ବଢ଼ିବାକୁ ଲାଗିଲା । ବଣଜନ୍ତୁଙ୍କ ସଙ୍ଗେ ଆସ୍ତେ ଆସ୍ତେ ପରିଚୟ ହୋଇଗଲା ।

ସବୁ ପଶୁମାନଙ୍କୁ ଚିହ୍ନିଲା । ଯେହେତୁ; ସେ ଗୋଟିଏ ବଳୁଆ ପ୍ରାଣୀ ଯେତେବେଳେ ଯାହା ଭାବିଲା, ପଶୁଜାତି ମଧ୍ୟରେ କରି ବସିଲା । କାହାକୁ ମାରିଲା, କାହାକୁ ପିଟିଲା, ଯାହା ଇଚ୍ଛା ତାହା କରି ବସିଲା; କିନ୍ତୁ ଯେହେତୁ ପଶୁ ସ୍ୱଭାବ, ସେସବୁ ପଶୁଙ୍କ ପରି ଭାବ ଦେଖେଇଲା, ଆଉ ହରିକଥା ଭୁଲିଗଲା । ହରି ଦେଖୁଥାନ୍ତି—ସିଂହ କ'ଣ କରୁଛି ? ମୋତେ କହିଥିଲା—'ପ୍ରଭୁ ତୁମ୍ଭ ନାମ ଧରିବି ।' ନାମ ତ ଦିନେ ଧରିଲା ନାହିଁ । ମୂଷା ଥିଲା ସିଂହ କଲି, ଖାଇ ପିଇ ବେଶ୍ ତ ସୁସ୍ଥରେ ଅଛି । ମନରେ ଯେ ଏତେ ଗର୍ବ କାହାକୁ ମାନୁନି । କହୁଛି—'ମୋ ପରି ବଳୁଆ ଓ ବୁଦ୍ଧିଆ ଆଉ କେହି ନାହିଁ । କ'ଣ କରାଯିବ ?

ଏଇମିତି ଦିନେ ପ୍ରଭୁ ଭାବି, ଯାଇ ସିଂହ ନିକଟରେ ପହଞ୍ଚିଲେ । ସିଂହ ଦେଖି ଚିହ୍ନି ପାରିଲା ଓ ହଠାତ୍ ତା'ର ପୂର୍ବଜନ୍ମ ମୂଷା ବୋଲି ସ୍ମରଣ ଆସିଗଲା । ପ୍ରଭୁଙ୍କୁ କହିକିତ ସିଂହ ରୂପ ନେଇଥିଲା, କଥା ତ ରକ୍ଷା କରିପାରିନି, ଦିନେ ତ ପ୍ରଭୁଙ୍କୁ ସ୍ମରଣ କରିପାରିନି, ବଡ଼ ଲଜ୍ଜିତ ହେଲା ।

ପ୍ରଭୁ ସେଠୁ କହିଲେ—'ପୁନରମୂଷିକ ଭବଃ । ଅର୍ଥାତ୍ ପୁଣି ମୂଷା ହୋଇଯା ।' ସେଇଠୁ କ'ଣ ହେଲାନା, ସେଇ ସିଂହ କ୍ଷଣିକ ମାତ୍ର ସମୟ ମଧ୍ୟରେ ମୂଷାଟିଏ ପାଲଟିଗଲା । ତା'ର ଗର୍ବ ଫର୍ବ ସବୁ ଛାଡ଼ିଗଲା ।

ଏଇ ଗଳ୍ପଟି ପରି, ଠିକ୍ ଆଜି ମଣିଷ ସମାଜ ମଧ୍ୟରେ, ପ୍ରଭୁଙ୍କ କୃପାରୁ ମୂଷା ମଧ୍ୟ ସିଂହ ହୋଇଯାଇଛି । ସେଇମାନେ ଏ ଧରାପୃଷ୍ଠରେ ଜନମ ନେବା ପୂର୍ବରୁ, ପ୍ରଭୁଙ୍କ ପାଖରେ ଶପଥ ନେଇ ଆସିଥିଲେ, ପ୍ରଭୁଙ୍କ ଆବିର୍ଭାବ ବେଳେ ତାଙ୍କୁ ଚିହ୍ନିବେ ଓ ପ୍ରଭୁଙ୍କ ସେବା ପୂଜା କରିବେ । ଅଧର୍ମ କାର୍ଯ୍ୟ କରିବେ ନାହିଁ, ସାମାଜିକ ଶୃଙ୍ଖଳା ରକ୍ଷା କରିବେ । ମୂଷା ପରି ଛୋଟିଆ ଜୀବ ପ୍ରତି ଦୟା ରଖିବେ, ପ୍ରଭୁଙ୍କ ନାମ ଧରି ଡାକୁଥିବା ଭକତ ଜନଙ୍କ ପ୍ରତି ଆଦର ଶ୍ରଦ୍ଧା ସମ୍ମାନ ଭାବ ରଖିବେ । ମୋଟାମୋଟି ଭାବେ ସତ୍ ମାର୍ଗରେ ରହିବେ, ଯଦି କିଏ ଅଧର୍ମ ପାପକାର୍ଯ୍ୟ କରି

ବସେ, ସେଥିରୁ ତାକୁ ନିବୃତ୍ତ କରାଇବେ; କିନ୍ତୁ ସେଇ ଶପଥ ଆଜି ରଖି ନାହାନ୍ତି । ଦେଖାଯାଉଛି, ବର୍ତ୍ତମାନ ସେଇମାନଙ୍କ ଦ୍ୱାରା ବେଶି ଅଧର୍ମ, ପାପାଚାର, ବେନିୟମ ବିଶୃଙ୍ଖଳା ବଢ଼ି ବଢ଼ି ଚରମ ସୀମାରେ ପହଞ୍ଚିବାକୁ ବସିଲାଣି ।

ତେବେ କ'ଣ ଫଳ ହେବ ?

ଏହାର ଉତ୍ତରଟି ମନକୁ ପଚାରିଲେ ମିଳିଯିବ ବୋଲି ଆଶା କରାଯାଉଛି । ଆଜି ତ ମଣିଷ ଯାଇ କେଉଁଠି ଉଠିଲାଣି ତାକୁ ଆଉ ବା କି ଉପଦେଶ ଦେଇହେବ ? ଖାଲି ଟିକେ ଟିକେ ପଦେ ପଦେ ସତର୍କବାଣୀ ପ୍ରଦାନ କରାଯାଉଛି । ଚେତା ଉଦୟ ପାଇଁ ଚେତାବନୀ ରଖାଯାଉଛି ।



## 'ମା'କୁ ସେବିଲେ ବାପାଙ୍କୁ ପାଇ ।' ଏହାର ତାତ୍ତ୍ୱିକ ଅର୍ଥଟି କ'ଣ ?

ମା' ଅର୍ଥ ଆଦ୍ୟାଶକ୍ତି ଯୋଗମାୟାଙ୍କୁ ବୁଝାଯାଏ । ଭକ୍ତ କେବେ ସିଧା ସିଧା, ବାପା ଅର୍ଥାତ୍ ପ୍ରଭୁଙ୍କ ପାଖକୁ ଯାଇପାରେନା, ମା'ର ଅନୁମତି ମିଳିଲେ ବା ମା'ର କୃପାଲାଭ ହେଲେ ଭକ୍ତ ଆଗକୁ ପାଦ ପକେଇପାରେ । ତା' ପାଇଁ ସବୁ ବାଟ ଖୋଲିଯାଏ । ସେ ଆଉ ବଣା ହୋଇପାରେନା, ଅର୍ଥାତ୍ ସବୁପ୍ରକାର ମାୟା ତା'ଠାରୁ ଅପସରିଯାଏ । ସେ ବ୍ରହ୍ମ ଦର୍ଶନ ପାଏ ।

ତେଣୁ ପ୍ରଥମେ ଶିଶୁ ଭାବେ ଭକ୍ତ, ମା'ଙ୍କ ପାଖରେ ଅଳି କରିବା କଥା । ବର୍ତ୍ତମାନ ସେ ସବୁରେ ବ୍ୟତିକ୍ରମ ଦେଖାଯାଉଛି । ଭକ୍ତ ଯେତେ ଚେଷ୍ଟା କରୁଛି ବା ଭାବୁଛି ପ୍ରଭୁଙ୍କ ଦର୍ଶନ ଓ ପ୍ରଭୁଙ୍କର କୃପାଲାଭ ପାଇଁ, ସେ ମାୟାରେ ପଡ଼ି ବଣା ହୋଇ ଯାଉଛି; ଦର୍ଶନ ପାଇବାରୁ ବଞ୍ଚିତ ହେଉଛି । 'ଯୋଗମାୟାଙ୍କ ମାୟାରୁ ରକ୍ଷା ପାଇବା ପାଇଁ ପ୍ରଥମେ ତାଙ୍କୁ ଡାକ ।'—ଏଇ ବାକ୍ୟଟିକୁ ଉପଦେଶ ଭାବେ ପ୍ରଦାନ କରାଯାଉଛି, ସମସ୍ତ ଭକ୍ତଜନଙ୍କୁ ।



## 'କିଏ ବା ଅଛି କେଉଁ ମତେ, ଜାଣିବି ଅବା ମୁଁ କେମନ୍ତେ ?'

ଏଇ କଥା ପଦିକର ବହୁ ଗୁରୁତ୍ୱ ଅଛି । ଉଦ୍ଧବଙ୍କ ପରି ପରମଭକ୍ତମାନେ କଥା କଥାକେ ଏହି ଧାଡ଼ିଟିକୁ ପ୍ରୟୋଗ କରିଥାନ୍ତି । ଭକ୍ତ ସବୁବେଳେ ପ୍ରଭୁଙ୍କ ସଙ୍ଗେ ସାକ୍ଷାତକାର ପାଇଁ ଧ୍ୟାନ କରେ । ଧ୍ୟାନରେ ପ୍ରଭୁଙ୍କ ସଙ୍ଗେ କଥାବାର୍ତ୍ତା କରିଥାଏ । ବେଳେବେଳେ ମଧ୍ୟ ସବୁ ଜାଣି, ସବୁ ଶୁଣି, ପ୍ରଭୁଙ୍କ ମାୟାକୁ କାଟି ପାରେନା ଅବୋଧ ଶିଶୁଟି ପରି ପ୍ରଭୁଙ୍କ ପାଖରେ ଅଳି କରି ବସେ ଓ ଚକ୍ଷୁରୁ ଲୋତକ ଝରାଏ ।

ସବୁବେଳେ ଧ୍ୟାନରେ କହେ—'ପ୍ରଭୁ ! ମୋତେ ଆପଣଙ୍କର ମାୟାଠାରୁ ଟିକେ ଦୂରେଇ ରଖିବେ । ସେତେବେଳେ ପ୍ରଭୁ କହୁଥାନ୍ତି ହଁ ରଖିବି ।'

ପ୍ରଶ୍ନ କରି ବସେ—'କିଏ ବା ଅଛି କେଉଁ ମତେ, ଜାଣିବି ଅବା ମୁଁ କେମନ୍ତେ ?'

ତପୂରେ ପ୍ରଭୁ କହିଦିଅନ୍ତି—କିଏ କିଏ କେଉଁ ମତରେ ଅଛନ୍ତି ଓ କିପରି ଚିହ୍ନି ପାରିବାର ଉପାୟ । ଏଇଠାରେ ଏତକ ଜଣାଇବାର କାରଣ—ଭକ୍ତଜନ ଏହି ଉପାୟରେ, ସାଧନା ମାର୍ଗରେ, ଆଗକୁ କ'ଣ ଘଟିବ ବୋଲି ଶୂନ୍ୟ ବାର୍ତ୍ତାମାନ ପାଇବାକୁ ସକ୍ଷମ ହେବେ ।



## ଶୁଆ ଓ ଶାରୀଙ୍କ ମଧ୍ୟେ ହେଉଥିବା କଥାବାର୍ତ୍ତାର ମୁଖ୍ୟାଂଶ

''ଯିଏ ତ ଅଚ୍ୟୁତ, ଏବେ ସେହି ତ ଅନନ୍ତକେଶରୀ । ଅଚ୍ୟୁତ ନିଜକୁ ଦୀନ ହୀନ ଅଧମ ମୂଢ଼ ପାମର କହୁଥିଲେ; କିନ୍ତୁ ଆଜି ସେଇ

ପ୍ରଭୁ ନିଜକୁ ''ପ୍ରଭୁ'' ଭାବେ ପରିଚୟ ଦେଇ ଅର୍ଡ଼ର ଦେଉଛନ୍ତି କାହିଁକି ? କ'ଣ ଆଗପରି ଭକ୍ତଙ୍କୁ ଯେପରି ଠକିଦେଇ ଚାଲି ଯାଉଥିଲେ, ଏବେ ସେଇପରି କଲେ ଚିନ୍ତା ନାହିଁ ?'' —ଏଇ ପ୍ରଶ୍ନଟି ଶାରୀ କହିଥିଲା ଶୁଆକୁ ।

ସେଠୁ ଶୁଆ କହିଥିଲା—''ହଁ ଲୋ ଶାରୀ ! ତୁ କି ବୁଝିପାରୁନାହୁଁ, ସେତେବେଳେ ନା ସେ ପ୍ରଥମ ଜନ୍ମ ବେଳେ ପା' କହିଦେଇ ଯାଇଥିଲେ– ମୁଁ ପୁଣି ୧୩ ଜନ୍ମରେ ଆସିଲାବେଳେ, ଶକ୍ତି ନେଇ ଆସିବି ଧର୍ମ ସଂସ୍ଥାପନା ପାଇଁ । ସେତେବେଳେ ତତ୍‌କ୍ଷଣାତ୍ କାର୍ଯ୍ୟକ୍ରମ ହେଇଯିବ । ଆଉ ମୂଢ଼ ଅଜ୍ଞାନ ପାମର ଦୀନ ହୀନ ପ୍ରଭୃତି ଶବ୍ଦ ପ୍ରୟୋଗ ହେବନାହିଁ, ସେତେବେଳେ କେବଳ ଅର୍ଡ଼ର ଦିଆଯିବ, ଯିଏ ନ ମାନିବ; ସଙ୍ଗେ ସଙ୍ଗେ ଯାହା ହେବାର କଥା ହେବ ।''

ଏହା ଶୁଣି ଶାରୀ ପଚାରିଲା—''କିହୋ ! ତୁମେ ଟିକେ ଫିଟେଇ କି କୁହନା; ଏମିତି କ'ଣ ଗଣ୍ଠି ପକେଇ କଥା ଗୋପନ ରଖି ମୋତେ ଠକିଦେଉଛ ? ମୁଁ ପରା ତୁମ୍ଭର ଧର୍ମପତ୍ନୀ; ମୋତେ ତ କହିବ ନାହିଁ; ଆଉ କାହା ଆଗରେ କହିବ ? ଭଲ ଆଚ୍ଛା କଥା ତ ! ଆଉ କପଟ ନ ରଖି ପ୍ରକାଶ କର ବୋଲି, ବହୁ ବିନୟ ସହକାରେ କହିବାକୁ ଲାଗିଲା ।''

ତା'ପରେ ଶୁଆ ମୋଟେ ଆଉ କିଛି କଥା ଖୋଲିଲା ନାହିଁ । ଖାଲି କହିବାକୁ ଲାଗିଲା—''ନା, ଆଉ ପଦେ ହେଲେ ଏ ପାଟିରୁ ବାହାରିବ ନାହିଁ, କହିଲେ ପ୍ରଭୁଙ୍କ ପାଖରେ ଅପରାଧୀ ହୋଇଯିବି, ମୋର ଧର୍ମ ଓ କର୍ମ ଏବଂ ପୁଣ୍ୟତକ ସବୁ ନଷ୍ଟ ହୋଇଯିବ ।''



## ତୃତୀୟ ପରିଚ୍ଛେଦ

### 'ଯୁଗ ଶେଷବେଳେ ମରିବେ ଗୋରୁ ଅପାର ।'— ମାଳିକା କହିଥିଲା, ଏବେ ତାହା ହୋଇଗଲା ।

ପ୍ରଧାନ ଶିଷ୍ୟ ରାମଦାସଙ୍କୁ କହି ଦିଆଯାଇଥିଲା—"ପ୍ରିୟ ରାମ ! ଯୁଗ ଶେଷ ବେଳର ସନ୍ତକମାନ ମନେ ରଖିଥା । ଯେତେବେଳେ ଏ ସବୁର ସଙ୍କେତ ଦେଖିବୁ; ଜାଣିବୁ ଯେ; ମୋର ଆବିର୍ଭାବ ହୋଇଯାଇଥିବ ଗୁପ୍ତରେ; ତେବେ ଯାଇଁ ମୋତେ ଖୋଜିବାକୁ ଲାଗିବୁ । ତା'ପରେ ମୋର ଦର୍ଶନ ପାଇ, ଲୀଳାରେ ସାମିଲ ହୋଇବୁ ।"

ଗୋଟିଏ ଠାର ଥିଲା—ମଣିଷ ମରିବା ଆରମ୍ଭ ହେବା ଆଗରୁ ପ୍ରଥମେ ଦେଖିବୁ; ଗୋରୁଗାଈ ଅସଂଖ୍ୟ ମରିବେ ଅର୍ଥାତ୍ ଗୋ-ମଡ଼କ ପଡ଼ିବ । ଯାହା ଆଗରୁ କୁହାହୋଇଥିଲା, ବର୍ତ୍ତମାନ ସେ ସବୁ ଘଟିଲା ବା ଘଟୁଅଛି ଏବଂ ଆଗକୁ ମଧ୍ୟ ଘଟିବ ।

ତର୍ଜମା—ଦୈନିକ ସମ୍ବାଦପତ୍ର 'ଧରିତ୍ର'ର ତା' ୧୦.୦୯.୧୯୯୭ ସଂଖ୍ୟାରେ ପ୍ରକାଶ ପାଇଛି—ଅବିଭକ୍ତ ଗଞ୍ଜାମ ଜିଲ୍ଲାରେ; ଗାଈ-ଗୋରୁଙ୍କୁ ଫାଟୁଆ ରୋଗ, ମହାମାରୀ ଭଳି ବ୍ୟାପୀ, ୩ ମାସରେ ଲକ୍ଷାଧିକଙ୍କର ମୃତ୍ୟୁ ହୋଇଗଲାଣି ଓ ପୁଣି ଆଉ ଅଧିକ ସଂଖ୍ୟାରେ କଷ୍ଟ ଭୋଗ କରୁଛନ୍ତି । ପୁଣି ବାକି ଅଞ୍ଚଳରେ ମଧ୍ୟ ଶହ ଶହ ସଂଖ୍ୟାରେ ଗୋରୁଙ୍କୁ ବେମାରି ହୋଇ ମରିଥିବାର ଖବର ମିଳିଛି । ଏହାଛଡ଼ା ଓଡ଼ିଶର ଆଉ କେତେକ ଜାଗାରେ ମଧ୍ୟ ଗୋ-ମଡ଼କ ହୋଇଥିବାର ଖବର ସମ୍ବାଦପତ୍ରରେ ବାହାରି ପଡ଼ିଲାଣି । ଦୈନିକ 'ସମୟ'ର ତା' ୧୮.୧୦.୯୭ରେ ପ୍ରକାଶ ପାଇଛଇ—କଖଡ଼ି, ଧୂସୁରିଆ ଓ ମଞ୍ଜେଶ୍ୱର ଗ୍ରା.ପରେ ଫାଟୁଆ ରୋଗ ବ୍ୟାପୀ ଶହ ଶହ ଗୃହପାଳିତ ପଶୁ ବଳଦ, ଗାଈ ମୃତ୍ୟୁମୁଖରେ ପଡ଼ିଲେଣି । ଜନସାଧାରଣ

ତ ସମସ୍ତେ ପଢୁଛନ୍ତି ଜାଣୁଛନ୍ତି, ସବୁ କଥା ଆଜିକାଲି ତ ଖବରକାଗଜ କହିଦେଉଛି । କୌଣସି କଥା ତ ଲୁଚିକି ରହୁନି । ଏଠାରେ କେବଳ ମାତ୍ର ଟିକିଏ ସ୍ମରଣ କରି ଦିଆଯାଉଛି ।

ଦ୍ୱିତୀୟରେ ଠାର ଥିଲା—"ପଙ୍ଗପାଳ ଆସିବେ, ଗଛପତ୍ର ଚରିଯିବେ ଅର୍ଥାତ୍ ସବୁ ଖାଇଯିବେ ।"

ଏଇ ୫୦ ବର୍ଷ ମଧ୍ୟରେ ଏକରୁ ଅଧିକ ଥର ଆସି ଖାଇଯାଇ ଚାଲିଗଲେଣି । ପୁଣି ଆସିବାକୁ ସମୟ ଆସୁଚି, ଆସିବେ ।

ତର୍ଜମା—ଦୈନିକ 'ସମୟ'ର ତା ୧୧.୦୯.୯୭ ସଂଖ୍ୟାରେ ପ୍ରକାଶ ପାଇଛି—ପାକିସ୍ଥାନଆଡୁ ପଙ୍ଗପାଳ ଆସିବା ଦେଖି ତାଙ୍କୁ ଘଉଡ଼ାଇବା ପାଇଁ ସୀମାନ୍ତରେ କୁଆଡ଼େ କ'ଣ ଯନ୍ତ୍ରପାତି ଫିଟ୍ କରାଯାଉଛି । ସିଆଡୁ ଆସିବେ, ରାଜସ୍ଥାନ ବାଟଦେଇ ।

ସିଏ ତ ଆସିବେ, ଏ ତ ବିଧିର ନିର୍ଦ୍ଦେଶ । ତାଙ୍କ ପାଇଁ ତ ଭାରତରେ ଗଛଲତା ଲଗାଯାଇଛି, ଏଇଆକୁ ତ ଖାଇ ବଞ୍ଚିବେ, ଏଥିରେ ଛାନିଆଁ ହେଲେ କ'ଣ ବା କରାଯାଇପାରିବ ?

କଳି ଶେଷ ହେଲାବେଳେ ତାଙ୍କର ତ ପୁଣି କିଛି ଭୂମିକା ଅଛି !



## 'ଦେବାଦେବୀଙ୍କ ନାଁରେ ଠକିଲେ ଓ ଭଣ୍ଡିଲେ ଯମ ବାନ୍ଧିନେବେ ।'

—'ଯମଙ୍କୁ ଏହି କଥା ଦେବୀ ଯୋଗମାୟା କହି ସାରିଛନ୍ତି ଓ ସଂପୃକ୍ତ ବ୍ୟକ୍ତିମାନଙ୍କୁ ମଧ୍ୟ ଚିହ୍ନଟ ଦେଇସାରିଛନ୍ତି ।'

ପ୍ରଭୁ କହିଥିଲେ ଦେବୀ ଯୋଗମାୟାଙ୍କୁ କ'ଣ କରାଯିବ ? ଏ ଦୁଷ୍ଟ ତ ଏମିତି ମୋ ଭକ୍ତଗଣଙ୍କୁ ଠକିଲେ, ଟଙ୍କା ଆଦାୟ କଲେ, ପେଟ ପୋଷିଲେ, ଧର୍ମ କ'ଣ, କର୍ମ କ'ଣ କିଛି ଜାଣିଲେ ନାହିଁ, ଖାଲି ଭୋଗ

ବିଳାସ କରିବାକୁ ମନରେ ଚିନ୍ତା କଲେ; ପାଟିକୁ ସୁଆଦିଆ ଖାଦ୍ୟ ଦରକାର, ମନ ରହିଲା ସନ୍ଦେଶ ମିଠା ପାଖରେ, ପୁଣି ମଧ୍ୟ ମନ ରହିଲା କି ଉପାୟ କଲେ ଆମପାଖକୁ ଲୋକ ଆସି ଜମା ହେବେ । କି ଭେଳିକି ସୃଷ୍ଟି କଲେ ମୋ ପାଖକୁ ଆଉଜି ବସିବେ, କିଏ ଟିକେ ମୋ ଗୋଡ଼ରେ ହାତମାରି, ତା' ମଥାରେ ମାରିବ ତ, କିଏ ପୁଣି ବାବା କହି ପ୍ରଶଂସା ଖାଲି କୁଢ଼େଇ ପକେଇବ, ସେଇଥିରେ ମୋ ପେଟ ପୁରିଯିବ । ପ୍ରଭୁ ପ୍ରଭୁ ଗୋଟାଏ କ'ଣ ମ ଏ କଳିଯୁଗରେ, ପ୍ରଭୁ ପ୍ରଭୁ କିଛି ନାହିଁ । ନିଜେ ନିଜକୁ ଭଲକି ବନେଇ ପାରିଲେ, ସଜେଇ ପାରିଲେ, ନିଜେ ହୋଇଯିବା ପ୍ରଭୁ, ଲୋକେ ଡାକିଲେ ହୋଇଯିବା ପ୍ରଭୁ, ଲୋକଙ୍କ ଡାକ ଶୁଣିବାକୁ ହେଲେ, ସେଇମିତି କିଛି ଲୋକ ଯୋଗାଡ଼ କରିବାକୁ ହେବ । କାହାକୁ ବିଡ଼ି ଦେଇ, କାହାକୁ ପାନ ଦେଇ, କାହାକୁ ଚା' ଜଳଖିଆ ଦେଇ, କାହାକୁ ବା ଟଙ୍କା ଦେଇ ମୁହଁ ବଙ୍କା କରେଇ, କାହାକୁ ବା ମଦ ଭାଙ୍ଗ ଟିକେ ଦେଇ, କାହାକୁ ବା ଯୁବତୀଟିଏ ଭେଟି ଦେଇ, କାହାକୁ କାହାକୁ ଯେଉଁ ରକମର ସନ୍ତୁଷ୍ଟ କରାଯାଇପାରିବ, ଏଇ ସୂତ୍ର ଜାଣିଗଲେ ହୋଇ ଯିବା ପ୍ରଭୁ । ଏଇ ପ୍ରକାର କାର୍ଯ୍ୟ କରି ସବୁ ବନିଯାଇଛନ୍ତି ପ୍ରଭୁ । ପୃଥିବୀର ଏ ମୁଣ୍ଡରୁ ସେମୁଣ୍ଡ ଯାଏ ତ ସବୁ ବୁଲି ଦେଖିସାରିଲେ, ତେବେ କ'ଣ କଲେ, ଏଇ ସବୁ ପ୍ରଭୁ ହୋଇଯାଇଥିବା ପ୍ରଭୁମାନଙ୍କୁ ଏକତ୍ରିତ କରିପାରିବା ।

ଏଇ କଥା ପ୍ରଭୁଙ୍କ ମୁଖରୁ ଶୁଣି ଦେବୀ ଯୋଗମାୟା କହିବାକୁ ଆରମ୍ଭ କରିଥିଲେ—"କାହିଁକି ଯେ ବ୍ୟସ୍ତ ହେଉଛନ୍ତି, ଟିକିଏ ଧୈର୍ଯ୍ୟ ଧରିବାକୁ ପଡ଼ିବ । ଯମଦେବଙ୍କୁ ମୁଁ ସେଦିନ ସଙ୍ଗରେ ନେଇ ପୃଥିବୀର ଗୋଟିଏ ମୁଣ୍ଡରୁ ଅନ୍ୟ ମୁଣ୍ଡକୁ ବୁଲି ବୁଲି ସବୁ ଠକୁଆ ଭଣ୍ଡୁଆମାନଙ୍କୁ ଚିହ୍ନେଇଦେଇ ଆସିଚି, ଏଣିକି ଯମଦେବ ତାଙ୍କ ଦାୟିତ୍ୱ ତୁଲାଇବେ । କଳି ଓ ସତ୍ୟ ମଧ୍ୟ ମୋ ସାଙ୍ଗରେ ଯାଇଥିଲେ । କଳି ତ ସବୁ ଗୁପ୍ତମଠ,

ଆଶ୍ରମ, ମନ୍ଦିର, ଆଡ୍‌ଡ଼ା, ଗୁମ୍ଫା, ଗହୀର, କୋଠାବାଡ଼ି ଇତ୍ୟାଦି ଇତ୍ୟାଦି ଯେଉଁଠାରେ କି ସେ ରହି ତା'ର ଆଧିପତ୍ୟ ବିସ୍ତାର କରିଥିଲା, ସେଇ ସ୍ଥାନମାନ ସତ୍ୟକୁ ବୁଲେଇ ବୁଲେଇ ଦେଖାଯାଉଥିଲା । ସେଇ ଜାଗାମାନଙ୍କରେ ସତ୍ୟ ପଶିବ, ଆଉ କଳି ହଟିଆସିବ । ଏଇ କଥାମାନ ଦେବୀ ଯୋଗମାୟା ଜଣାଇ ନୀରବ ହୋଇଗଲେ ।''



## 'ଅ' ଅକ୍ଷରରେ ନାମ ହୋଇବ, 'ଅଳତି' ପ୍ରଗଣାରେ ଖେଳ ହେବ । 'ଦ' ଅକ୍ଷରରେ ଗ୍ରାମ ସେ ଥିବ, 'ଦର୍ପଣୀ' ତହସିଲ ମଧ୍ୟେ ଭେଟ ପାଇବ ।

ପ୍ରଥମ ଜନ୍ମ ସମୟେ ନେମାଳ ପଦ୍ମବନ ପୀଠରେ, ଦେହ ଛାଡ଼ିବା ପୂର୍ବରୁ ଦ୍ୱାଦଶ ଗୋପାଳଭକ୍ତମାନଙ୍କୁ ଏକାଠି କରାଇ ଏହି କଥାଟି ଶୁଣେଇ ଦିଆଯାଇଥିଲା, ଅର୍ଥାତ୍ ଶୂନ୍ୟ ସାଧନା ଶୂନ୍ୟରେ କରି, ଶୂନ୍ୟରେ ମିଳେଇ ଯିବା ପୂର୍ବରୁ ଏହି ଦି' ଧାଡ଼ିଟିକୁ ଠାର ଦେଇ ପୋଥିରେ ଉଲ୍ଲେଖ କରେଇ ଦିଆଯାଇ, ସଙ୍କେତ ସ୍ୱରୂପ ତେରଜନ୍ମର ଲୀଳାଖେଳା ଦେବାକୁ ଥିବା ଗ୍ରାମ, ପ୍ରଗଣା, ତହସିଲ ଓ ନିଜ ନାମ କ'ଣ ହୋଇଥିବ, ଇତ୍ୟାଦିର ପ୍ରଥମ ଅକ୍ଷରକୁ ଠାର ଦେଇ ଶୁଣେଇ ଦିଆଯାଇଥିଲା ।

ପୁଣି କହି ଦିଆଯାଇଥିଲାଯେ, ଯୁଗ ଶେଷ ଲୀଳାବେଳେ ତୁମ୍ଭେମାନେ ମଧ୍ୟ ଜନ୍ମ ହୋଇ ଯାଇଥିବ ବିଭିନ୍ନ ସ୍ଥାନରେ । ଏଇ ସଙ୍କେତରୁ ଖୋଜିଲେ ମୋତେ ପାଇବ ।

ସେଇ ସଙ୍କେତଗୁଡ଼ିକ ହେଲା—''ଯେଉଁ ଗ୍ରାମରେ ମୁଁ ଜନ୍ମ ହୋଇଥିବି ସେହି ଗ୍ରାମର ପ୍ରଥମ ଅକ୍ଷର ଥିବ—'ଦ' ଓ ତହସିଲର ପ୍ରଥମ ଅକ୍ଷର ମଧ୍ୟ ଥିବ 'ଦ' । ପୁଣି ନାମ ମୋର ହୋଇଥିବ ଆଦ୍ୟ ବା ପ୍ରଥମ ଅକ୍ଷର 'ଅ' ଏବଂ ଯେଉଁ ପ୍ରଗଣା ମଧ୍ୟରେ ସେଇ ଗ୍ରାମଟି ଥିବ, ତାହାର ବି ପ୍ରଥମ ଅକ୍ଷର ହୋଇଥିବ 'ଅ' ।

ଯେତେବେଳେ ଏ ସବୁ ମେଳ ଖାଇବ, ଜାଣିବାକୁ ହେବଯେ ମୁଁ ସେଇଠି ଥିବି । ତା'ପରେ ତୁମ୍ଭେମାନେ ମୋତେ ଖୋଜି ଖୋଜିକି ଯିବ, ମୋର ଦର୍ଶନ ପାଇବ ।

ସତକୁ ସତ ଜନ୍ମ ହେବାବେଳେ ଅର୍ଥାତ୍ ଏକୋଇଶିଆ ଦିନ ବ୍ରହ୍ମା ନାମକରଣ କରେଇ ଦେଇଗଲେ 'ଅ' ଅକ୍ଷରରେ 'ଅନନ୍ତ କେଶରୀ' । ଯେଉଁ ଗ୍ରାମରେ ଜନ୍ମ ହେଲା, ସେଇ ଗ୍ରାମର ପ୍ରଥମ ଅକ୍ଷର 'ଦ' ହେଲା ଅର୍ଥାତ୍ 'ଦେକୁରୀ' । ସେହି ଗ୍ରାମଟି ପୁଣି 'ଦ' ଅକ୍ଷର ତହସିଲ ମଧ୍ୟରେ ଅର୍ଥାତ୍ 'ଦର୍ପଣୀ' ତହସିଲରେ ଅଛି ।

ପୁଣି 'ଅ' ଅକ୍ଷର ପ୍ରଗଣାରେ ଖେଳ ହେବ, ଅର୍ଥାତ୍ ସେହି 'ଦେକୁରୀ' ଗ୍ରାମଟି ମଧ୍ୟ ପ୍ରଗଣା-'ଅଳତି' ମଧ୍ୟରେ ଅଛି, ଏହି ୪ଟିଯାକ ଅକ୍ଷରର ସଙ୍କେତ, ସନ୍ତକ ବା ଠାର ସବୁ ମେଳ ହୋଇଛି ।

ଏ ସବୁ ବିଧିର ବିଧାନ, ଯା'କୁ କେ କରିବ ଆନ ? ଏବେ ଏସବୁ କଥା ଧିରସ୍ଥିର ମନରେ ବିଚାର କରି, ଚର୍ଚ୍ଚା କରିବା ହୁଅନ୍ତୁ ।

ତର୍ଜମା—ଶ୍ରୀଅରକ୍ଷିତ ଭଞ୍ଜ ଏହି ସଙ୍କେତ ଥିବା ଗ୍ରାମ ତହସିଲ ଓ ପ୍ରଗଣାରେ ବ୍ରହ୍ମାଙ୍କ ପ୍ରଦତ୍ତ ନାମ ଶ୍ରୀ ଅନନ୍ତ କେଶରୀ କଲ୍କୀ ରୂପେ ଜନ୍ମଲଭି ସନ୍ ୨୦୦୬ ଯାଏଁ ଗୁପ୍ତରେ ରହିଥିଲେ । ୨୦୦୭ରେ ସେ ନିଜକୁ ଓ ନିଜ ପରିଚୟକୁ ଖୋଲି ଦେଲେ ବାହାରକୁ ପ୍ରକାଶିତ ହେଲେ ।



### 'ଦଣ୍ଡୁ ଆସମାନେ ଦଣ୍ଡକୁ ନ ଦେଇ ଆପେ ଚୋରି ଆଚରିବେ, ନିଜ ନାରୀ ମୁଖେ ବିଷ ଦେଇ ଫୁସ ଅନ୍ୟ ନାରୀ ରମିମେ ।'

**ସରଳ ଅର୍ଥ**—ଯୁଗ ଶେଷ ବେଳକୁ 'ଦଣ୍ଡୁ ଆସିମାନେ' ଅର୍ଥାତ୍ ଦଣ୍ଡ ଦେବା ଲୋକ, ଅର୍ଥାତ୍ ଶାସନ ସ୍ତରରେ ଥିବା ଲୋକ, ଅର୍ଥାତ୍ ଶାସକ କ'ଣ କରିବେ ନା ଅପରାଧୀକୁ ଦଣ୍ଡ ନ ଦେଇ ଆପେ ଆପେ

ଅର୍ଥାତ୍ ନିଜେ ଅପରାଧୀମାନଙ୍କ ସଙ୍ଗେ ସଲାସୂତ୍ରରା ହୋଇ ନିଜେ ଚୋରିବୃତ୍ତି କରି ବସିବେ । ଅର୍ଥାତ୍ ଅର୍ଥ ଉପାର୍ଜନ ପାଇଁ ଚୋର, ଡକାୟତି, ଖଣ୍ଡ ଓ ଦୁଷ୍ଟ ଲୋକଙ୍କୁ ଘଣ୍ଟ ଘଉଡ଼ାଇବେ, ଯାହାଦ୍ୱାରା ସାମାଜିକ ଶୃଙ୍ଖଳାରେ ବିଶୃଙ୍ଖଳା ଦେଖା ଦେଇ ସମାଜରେ ଧର୍ଷଣ, ଲୁଟ୍‌ପାଟ୍, ହତ୍ୟା, ଚୋରୀ, ଅପରାଧ ମାତ୍ରାଧିକ ହେବ ଯେ, ସାଧାରଣ ଲୋକ ତ୍ରାହି ତ୍ରାହି ଡାକ ଛାଡ଼ିବେ ।

**ତର୍ଜମା**—ଏଇ ଘଟଣାମାନ ସବୁ ଘଟି ଚାଲିଛି । ଲୋକେ ପତ୍ରପତ୍ରିକାରୁ ଏଇ ପ୍ରକାର ସମ୍ବାଦମାନ ପଢ଼ିବାକୁ ପାଉଛନ୍ତି । ଅପରାଧୀମାନଙ୍କ ସଙ୍ଗେ ରାଜନୀତିରେ ଭାଗ ନେଇଥିବା ବ୍ୟକ୍ତି ବିଶେଷମାନଙ୍କର ସଦ୍‌ଭାବ ରହିଛି, ଅର୍ଥାତ୍ ସୁସମ୍ପର୍କ ରହିଥିବାରୁ ବିବରଣୀମାନ ଦୈନିକ କାଗଜରେ ବାହାରି ପଡୁଛି ।

ତେବେ ମାଳିକା ବଚନ ଭୁଲ୍ ହେଉଛି କି ?—ନା, ଭୁଲ୍ ହେଉନି । ଖବରକାଗଜ ତ କହିଦେଉଛି କ'ଣ କେଉଁ ଠାରେ ହୋଇଛି । ଏବେ ପ୍ରତିଦିନ ଖବରକାଗଜ ଦେଖନ୍ତୁ ଓ ଏ ମାଳିକା ବ୍ୟାଖ୍ୟା ପାଠ ଟିକେ ବସି ପଢ଼ନ୍ତୁ, ସବୁ ମେଳ ହେଉଛି କି ନାହିଁ, ଟିକେ ଧୀର ସ୍ଥିର ନିରୋଳା ମନରେ ବସି ତର୍ଜମା କରନ୍ତୁ, ସବୁ ବୁଝି ପାରିବେ ।

—ହଁ, ଏବେ ତଳ ଧାଡ଼ିଟିର ବ୍ୟାଖ୍ୟା କରୁଛି ।

''ନିଜ ନାରୀ ମୁଖେ ବିଷ ଦେଇ
ଫୁସ ଅନ୍ୟ ସ୍ତିରୀରେ ରମିବେ ।''

ଏହାର ମାର୍ମିକ ଅର୍ଥଟି ହେଲା—ଯୁଗ ଶେଷ ସମୟକୁ ଲୋକେ ଏପରି ହେବେ ଯେ, କିଏ କିଏ ମଧ୍ୟ ନିଜ ବିବାହିତ ସ୍ତ୍ରୀକୁ ବିଷ ଦାନ କରି ବା ମାରିଦେଇ, ଅନ୍ୟ ସ୍ତ୍ରୀ ସଙ୍ଗରେ ପ୍ରୀତି କରିବେ । ଦୟା, ଧର୍ମ, ମାନବିକ ଚେତନା ସବୁ ଶୂନ୍ୟ ହୋଇଯିବ । ପଶୁଜାତି ପରି କର୍ମ କରି ବସିବେ । କେଉଁଟି ଠିକ୍, କେଉଁଟି ବେଠିକ୍ ବା ଭୁଲ୍, ଭାବିବାକୁ ସମୟ

ମିଳିବ ନାହିଁ । କଳି ଦେବତାଙ୍କର ମତି ଭ୍ରମ ଯୋଜନାରେ ପଡ଼ିଯାଇ ଅଧର୍ମ ରାସ୍ତାରେ ଗତି କରିବାକୁ ଶ୍ରଦ୍ଧା ମଣିବେ ।

**ତର୍ଜମା**—ଏଇ ଘଟଣାମାନ ଏବେ କେତେକ ଜାଗାରେ ଘଟିଲାଣି ବା ଘଟି ଚାଲିଛି ବା ଘଟିସାରି ଲୋକଲୋଚନକୁ ଆସି ସ୍ତ୍ରୀ ହତ୍ୟା କରିଥିବା ପୁରୁଷ ଲୋକଟି ଜେଲ୍ ଦଣ୍ଡ ଭୋଗ କଲା ବୋଲି, ଖବରକାଗଜ କହି ସାରିଲାଣି ବା କହୁଛି ଏବଂ ଆଗକୁ ମଧ୍ୟ କହିବ । ଲୋକେ ପଢ଼ିବେ, ଜାଣିବେ ଓ ଶେଷକୁ ମାଳିକା କଥାକୁ ବିଶ୍ୱାସ କରିବେ ।



## "ବାଇମନ ! ଉପନ୍ୟାସ ଛାଡ଼ି ମାଳିକାପାଠ ପଢ଼ । ତେବେ ହିଁ ପାଇବ ପରମଶାନ୍ତି । ଭଲକଥା ତା' ଭିତରେ ଅଛି ।"—କ'ଣ ଅଛି ?

ଦିନେ ଜନୈକ ବୃଦ୍ଧ ଏଇ କଥାଟିକୁ ଉପଦେଶ ଦେବା ଛଳରେ କହିଥିଲେ ଜଣେ ଯୁବକକୁ । ଲାଇବ୍ରେରୀରୁ ବୃଦ୍ଧ ଜଣକ ମାଳିକାବହି ଖାତାରେ ଦସ୍ତଖତ କରି ନେଲାବେଳେ, ସେହି ଯୁବକ ଜଣ ନେଇଥାନ୍ତି ହରେକ୍ କିସମର ଉପନ୍ୟାସ ବହି । ଯେଉଁଦିନ ଫେରାଇବାର ପାଳିଥାଏ, ବୃଦ୍ଧ ଆସନ୍ତି ଓ ଯୁବକ ମଧ୍ୟ ଆସନ୍ତି, ପରସ୍ପରକୁ ଭେଟାଭେଟି ହୁଅନ୍ତି । ପଦେ ଅଧେ ବାକ୍ୟ ପରସ୍ପରକୁ ବିନିମୟ କରନ୍ତି ।

ଦିନେ ହଠାତ୍ ଯୁବକ କହିବାକୁ ଲାଗିଲେ—"ମଉସା ! ତୁମେ ତ ମାଳିକା ବହି ନେଇ ପଢୁଛ, ମହାପୁରୁଷମାନଙ୍କ ଉପଦେଶ ସବୁ ଲେଖାଅଛି ଏ କଳିଯୁଗର ମାନବମାନଙ୍କ ପାଇଁ । ମୁଁ ତ ଏ ଉପନ୍ୟାସ ଯେତେ ସବୁ ଏ ୨ଟି ଆଲମିରାରେ ଥାକ ହୋଇ ରହିଛି ପ୍ରାୟ ଅଧେ ପଢ଼ିସାରିଲିଣି, କିନ୍ତୁ ମାଳିକା ବହି ଆଦୌ ପଢ଼ିନାହିଁ । ଭାବୁଛି ମଝିରେ ମଝିରେ ଏମିତି ଖଣ୍ଡିଏ ଖଣ୍ଡିଏ ନେଇ ଦେଖିବି, କ'ଣ ସବୁ ଲେଖାଅଛ କ'ଣ ମୋତେ ଡର ମାଡ଼ିବ ?"—ଏଇ ପଦଟି ଥାଏ ଶେଷର କଥା ।

ଏଇ କଥାଟି ଶୁଣି ସେଠୁ ମଉସା କହିବାକୁ ଆରମ୍ଭ କଲେ— "ନାଇଁରେ ବାବୁ ! ତୁମେ ଜାଣିନା, ଏଥିରେନା ବହୁ ଶିଖିବାର ଜିନିଷ ଓ ଜାଣିବାର ଜିନିଷ ଭରି ରହିଛି । ପଢ଼ିବା ଆରମ୍ଭ କଲେନା, ଆଉ ମନ ମୋଟେ ଖରାପ ରାସ୍ତାକୁ ଯିବନାହିଁ । ତୁମକୁ ଟିକେ ଶାନ୍ତି ମିଳିବ । ଶ୍ରୀ ଅଚ୍ୟୁତ ମହାପୁରୁଷଙ୍କର ମଧ୍ୟ ଆଶୀର୍ବାଦ ପାଇବ । ଆଉରି ମଧ୍ୟ ଯଦି ଗୋଟିଏ କାନରୁ ପାଞ୍ଚକାନକୁ ଏଇ କଥାଟି ପ୍ରଚାର କରିପାରିଲ ନା, ଆଉରି ଧରମ କମେଇବ ।" ଏଇମିତି କଥାବାର୍ତ୍ତା ହେଇ ହେଇ ନିଜ ନିଜ ବାସଗୃହକୁ ଯିବାକୁ ଉଦ୍ୟମ କଲେ ।



## ପାନ ବିଡ଼ି ନେବାରେ ପଇସା ଲାଗୁଛି, ପ୍ରଭୁଙ୍କ ନାଁ ନେବାରେ ତ ପଇସା ଲାଗୁନି ।"—ତେବେ ଏ ଅଣହେଳା କାହିଁକି ?

ଏଇ ପଦଟି କହିଥିଲେ ମଉସା ଲାଇବ୍ରେରୀ ବାରଣ୍ଡାରେ, ସେହି ନାତି ବୋଲି ସମ୍ବୋଧନ କରୁଥିବା ଯୁବକଙ୍କୁ ।

ଖନେଇ ଖନେଇ କହିଲେ—"ଆରେ ବାବୁ ! ଯାହା ହେଉ ତୋତେ ନା ମୁଁ ଆଜି ଦେଖି ଭାରି ଖୁସି ହେଉଛି । ତୁ ତ ଏମିତି ବଦଳିଯିବୁ ବୋଲି ମୁଁ ମୋଟେ ଭାବିପାରୁ ନ ଥିଲି । ଯାହାହେଉ ପ୍ରଭୁଙ୍କର ଡୋରି ତୋତେ ଟାଣିଲା, ତୁ ତ କ'ଣ ଏଇ କେତେଦିନ ମଧ୍ୟରେ ଏତେଗୁଡ଼ାଏ ମାଳିକାକୁ ପଢ଼ିସାରି ମନେରଖି ସାରିଲୁଣି, ମୋତେ ତ ବଡ଼ ଆଶ୍ଚର୍ଯ୍ୟ ଲାଗୁଛି, ହଉ ପ୍ରଭୁ ତୋର ମଙ୍ଗଳ କରନ୍ତୁ ।"—ଏଇପରି କହି କହି ଟିକେ ନୀରବ ହେଲେ ।

କିଛି ସମୟ ଲାଇବ୍ରେରୀରେ ଏପଟ ସେପଟ ହେବାକୁ ଲାଗିଲେ । ବହୁ ଲୋକ ଆସୁଥାନ୍ତି ଯାଉଥାନ୍ତି । କିଏ ନୂଆ ନୂଆ ବହି ନେଉଛି ତ, କିଏ ବହି ଫେରାଇବାକୁ ଆସିଛି, ଏଇ ରକମର ସମସ୍ତେ ନିଜ ନିଜ କାମରେ ବ୍ୟସ୍ତ ରହିଥାନ୍ତି । ଖୁବ୍ ବଡ଼ ଗାଁଟି । ବହୁ ଲୋକ ଅଛନ୍ତି ।

—ଦୁହେଁ ନିଜ ନିଜ ଘରକୁ ଆସିବା ସମୟେ, ମଉସା କହିବାକୁ ଆରମ୍ଭ କଲେ—"ମାଳିକାକୁ ପଢ଼ିଲୁ, ବହୁ କଥା ଜାଣିଲୁ । ତୋ ସାଙ୍ଗ ଲୋକଙ୍କୁ କହୁଥା, ସେମାନେ ଟିକେ ଟିକେ ନଜର ପକାନ୍ତେ ସେଇ ପାଠ ଉପରେ ।"

ପୁଣି କହିଲେ, ଆଉ ଗୋଟିଏ କଥା ମନ ରଖିଥା—ପାନ ବିଡ଼ି ନେଲେ ପଇସା ଲାଗୁଚି, ପ୍ରଭୁଙ୍କ ନାମ ନେଲେ ତ ପଇସା ଲାଗୁନି । କେବେ ଅଣହେଲା କରିବୁ ନାହିଁ, ଟିକେ ଟିକେ ପ୍ରଭୁଙ୍କ ନାମ ଧରୁଥିବୁ । ଏଇ ଗାଁର ଲୋକଗୁଡ଼ାକ ନା କିଛି ବୁଝୁନାହାନ୍ତି, ବେଳ ଆସିଲେ ସବୁ ବୁଝିବେଯେ ।



## 'ହୀରାକୁଦ ବନ୍ଧ ତ ଭାଙ୍ଗିବ, ସବୁ ତ ଭାସିବା, ତେବେ ପ୍ରଭୁଙ୍କ ନାଁ ଧରିବା କାହିଁକି, ପ୍ରଭୁ କ'ଣ ବଞ୍ଚେଇ ଦେବେ କି ?'—ଏଇଟି ଏକ ଅବିବେକି ମଣିଷର କଥା । କି ଉତ୍ତର ଦିଆଯିବ ?

ଜଣେ ଲୋକ ଅନ୍ୟ ଜଣଙ୍କୁ କହୁଚି—"ହଇହୋ ! ଶୁଣିଲଣି ନା ମାଳିକାରେ ତ ଲେଖାଅଛି, ଦିନେ ବାହ୍ୟଶତ୍ରୁଙ୍କର ଗୋଳାବାରୁଦ କ୍ଷେପଣରେ ହୀରାକୁଦ ବନ୍ଧ ଭାଙ୍ଗିଯିବ, ପାଣି ତ ପାହାଡ଼ ଉଚ୍ଚରେ ଜମି ରହିଛି, ଏକାଥରକେ ଉସେଇନେବ, ସବୁ ତ ଭାସିବା, ପ୍ରଭୁ କ'ଣ ବଞ୍ଚେଇ ଦେବେକି, କାହିଁକି ନାଁ ଧରିବା ।"

ଏହା ଶୁଣି ସେ ଲୋକଟି କହିଥିଲେ—"ଆଚ୍ଛା କଥା ତ ପ୍ରଳୟ ଜଳରେ ତ ପୁଣି ମାର୍କଣ୍ଡଋଷି ଭାସି ଯାଉଥିଲେ, ତାଙ୍କୁ ତ ପୁଣି ପ୍ରଭୁ ରକ୍ଷା କରିଥିଲେ ; ସେଇମିତି ପାଣି ଆସୁ କ'ଣ ହୋଇଯିବ, ପ୍ରଭୁ ଯାହାଙ୍କୁ ଉଦ୍ଧାରି ରଖିନେବାର ରଖିନେବେ । ସେଥିରେ ତୁମେ କ'ଣ ମତାମତ

ଦେଇପାରିବ ? ଏସବୁରେ ପ୍ରଭୁଙ୍କର ଦୈବକୁଟ ମାୟା ଲାଗିଯିବ । ଭାସିବା ଲୋକ ଭାସିବେ, ରହିବା ଲୋକ ରହିବେ ।''

—''ତୁମେ ଭୁଲ୍‌କଥା କହି ଅପରାଧ କମେଇଲ । ପ୍ରଭୁ ସବୁ ଜାଣିପାରୁଛନ୍ତି, କିଏ କ'ଣ କହୁଛି, କିଏ କ'ଣ କରୁଚି, କଏ କ'ଣ ଭାବୁଚି ଓ କିଏ କ'ଣ ପୁଣି ଯୋଜନା କରୁଛି । ଏମିତି ଗୋଟାଏ ଅବିବେକି ମଣିଷଙ୍କ ଭଳି କ'ଣ କଥା କହୁଛ ? ତୁମେ ପାରା ମୋ ବନ୍ଧୁ ! ଆସ, ପ୍ରଭୁଙ୍କୁ କ୍ଷମା ମାଗ । ମୋ ସାଥିରେ ବସ ଦିହେଁ ପ୍ରଭୁଙ୍କ ନାଁ ଧରିବା— ହରେ କନ୍ଧୀ ହରେ କନ୍ଧୀ କନ୍ଧୀ କନ୍ଧୀ ହରେ ହରେ ।''

—ଏଇ ଯେଉଁ କଥୋପକଥନଟି ପଢ଼ିବାକୁ ପାଉଛନ୍ତି, ଏଇଟି ଥିଲା ପ୍ରକୃତ ସତ୍ୟକଥା । ଏହି କଥାଟି ପ୍ରଭୁଙ୍କ କାନରେ ଆସି ଶୁଭିଯାଇଥିଲା, ଦେବୀ ଯୋଗମାୟାଙ୍କ କରୁଣାରୁ ।



## ଚତୁର୍ଥ ପରିଚ୍ଛେଦ

ଏଇ ପରିଚ୍ଛେଦରେ ୧୪ ଗୋଟି ଚଉତିଶାର ପାଠ୍ୟ ଉପସ୍ଥାପନ କରାଯାଇଛି, ଗୋପୀ-ଗୋପାଳ ଓ ଭକ୍ତବୃନ୍ଦଙ୍କ ପାଇଁ । ସ୍ଥିର ମନରେ ପାଠକରି ଜାଣିବା ହୁଅନ୍ତୁ ।

### ଜଗନ୍ନାଥ ତତ୍ତ୍ୱ ଚଉତିଶା

କହଇ ଚୈତନ୍ୟ ଧିରେ ଶୁଣରେ ମନାଇ
କ୍ଷୀର ସିନ୍ଧୁ ମଧ୍ୟେ ଦେଖ କଳ୍ପବଟ ଛାଇ ।୧।
ଗୁପତ ହୋଇଛି ମହାନିତ୍ୟ ଯଉଁ ଠାଇଁ
ଘନ ଘନ ହୋଇ ନିଦ ଆସଇ ସେଠାଇଁ ।୨।
ଙଉତ୍ତର ଦକ୍ଷିଣ ପୂର୍ବ ପଶ୍ଚିମରେ ହେଜ
ଚାରିଦ୍ୱାରେ ଆବୋରିଣ ଅଛି ଚାରିବେଦ ।୩।

ଛାମୁ ଦର୍ଶନକୁ ବାଟ ପଡ଼ିଛି ସଧୀରେ
ଜଗନ୍ନାଥ ମହାପ୍ରଭୁ ସିଂହାସନ ପରେ ।୪।
ଝିନ ପତନୀଯେ ଦେଖ ତାଙ୍କ ଅଙ୍ଗେ ଶୋଭା
ନିତ୍ୟ କିଶୋରୀ ରାଧିକା ତାଙ୍କ ଅଙ୍ଗେ ପ୍ରଭା ।୫।
ଟାକି ହର ବ୍ରହ୍ମା ଯାକୁ କରିଛନ୍ତି ଆଶ
ଠୁଳ ଶୂନ୍ୟପରେ ଦେଖ ଲାଗିଛି ରାହାସ ।୬।
ଡାକ ହାକ ଶବଦ ନିର୍ଣ୍ଣୟ ଯଉଁ ଠାଇଁ
ଢୋଳାଇବାକୁ ନାହିଁ ଡୋଳା ସମାଧିକୁ ଚାହିଁ ।୭।
ନାଦରେ ବିନ୍ଦୁକୁ ଯେବେ ପାରିବୁ ମିଶାଇ
ତହୁଁ ମୂର୍ତ୍ତି ଏକ ବ୍ରହ୍ମ ଦେଖିବୁ ସେଠାଇଁ ।୮।
ଥୟେ କରି ମନ ସ୍ଥାପ ଭୂରୁର ମଧର
ଦୟା କ୍ଷମା ଶାନ୍ତି ହୋଇ ଦାସୀ ଅଙ୍ଗଧର ।୯।
ଧର୍ମ ଅର୍ଥ କାମ ମୋକ୍ଷ ହେଉଅଛି ଦୂର
ନେବା ଆଣିବାକୁ ଆଉ ନାହିଁ ନା ବିଚାର ।୧୦।
ପାଣି ନାହିଁ ପଙ୍କ ନାହିଁ ମାରୁଛି ଲହଡ଼ା
ଫୁଲ ଗୋଟି ଫୁଟିଅଛି ସହସ୍ର ପାଖୁଡ଼ା ।୧୧।
ବାରିବୁ ବାସନା ଯେବେ ଗୁରୁ ଆଜ୍ଞା ପାଇ
ଭ୍ରମର ବୁନ୍ଦିବ ତେବେ କର୍ଣ୍ଣିକାରେ ରହି ।୧୨।
ମଳା ମଳା ବୋଲୁଛନ୍ତି ଶୁଣରେ ମନାଇ
ଜଗତକୁ ମଳା ଜୀବ ରୋମେ ଟଳି ନାହିଁ ।୧୩।
ରା ରାଟି ଅଧିକା ରୂପ ନିତ୍ୟରେ ରାଉଛି
ଲୟେ କରି ଭୂଷଣ୍ଡ ଅମର ହୋଇଅଛି ।୧୪।
ବାଇକି ପରତେ ଯେବେ ହୋଇବ ସୁମନ
ଶିଶୁବେଦ ଘରେ ଦେଖ ସୁଆଙ୍ଗ ଭଜନ ।୧୫।

ଷ ଅଟି ଯେ ଶେଷଦେବ ଫଣୀ ମଣିପରେ
ଷରୂପରେ ଥାଇ ଗୋପୀ ଅରୂପ ଦେଖିଲେ ।୧୬।
ହ ଅଟି ଅଟନ୍ତି ହରି ହୃଦେ ତାଙ୍କୁ ଚିହ୍ନ
ହରି ଗୁଣି ମିଶାଇବ ସହଜେ ସୂତ୍ରେଣ ।୧୭।
କ୍ଷମାନିଧି ପାଦପଦ୍ମେ ପଶ ଯା ଶରଣ
କ୍ଷାର ବାଇ ଦାସଟୋକା ଅଚ୍ୟୁତ ଅଧମ ।୧୮।



## ଜ୍ୟୋତି ଦର୍ଶନ ଚଉତିଶା

କର ମନ ସତ୍ ସଙ୍ଗକୁ ଯେବେ ହେବୁ ଉଦ୍ଧାର
କରମ କଲେ ତୁ ପାଇବୁ ସେହି କମଳାବର ।୧।
ଖଳ ଖଣ୍ଡ ବୁଦ୍ଧି ତେଜିଣ ଖଟ ଶୋଇବା ଛାଡ଼
ଖଟ ସଦ୍‌ଗୁରୁ ପୟରେ ମନ କରିଣ ଦୃଢ଼ ।୨।
ଗୁପତ ହୋଇଲା କାଳକୁ କାଳେ ବ୍ରହ୍ମ ଗିଆନୀ
ଗୁମ୍ଫାରେ ଯାଇଣ ଧ୍ୟାଇଣ ଥାନ୍ତି ସେ ଯତି ମୁନି ।୩।
ଘଟେ ଘଟେ ଛନ୍ତି ସେ ପୂରି ଘନଶ୍ୟାମ ମୂରତି ।
ଘୋଟିଅଛି ମାୟା କୁହୁଡ଼ି କାହୁଁ ଜାଣିବୁ ଯେଥି ।୪।
ଙଦେ ହୋଇଅଛି ଅନା ହୋ ସେହି ଅଣାକ୍ଷରକୁ
ଉମାପତି ଥାନ୍ତି ଧ୍ୟାଇଣ ସଦା କଲେ ତାହାଙ୍କୁ ।୫।
ଚନ୍ଦ୍ର ସୂର୍ଯ୍ୟ ଘରେ ଜାଗିବୁ ତୋର ଚୈତନ୍ୟ ଦ୍ୱାରେ
ଚୋର ପଶି ନ ପାରିବଟି ତୋର ଏ ଘଟ ଘରେ ।୬।
ଛନ୍ଦ କପଟକୁ ତେଜିଣ ଛନ୍ଦା ଚରଣେ ମଜ
ଛଡ଼ ରିପୁ ତୋର ପଳାଇଯିବେ ପାଇଣ ଲାଜ ।୭।
ଜଗତ କରତା ଅଟନ୍ତି ଜଗନ୍ନାଥ ମୁରତି
ଜ୍ୟୋତି ପଥେ ସଦା ଦେଖିବୁ ଧ୍ୟାନ ବଳରେ ନିତି ।୮।

ଝଗଡ଼ ସଂସାରେ ନ ପଶ ଝୁଣ୍ଟି ପଡ଼ିବୁ ଦିନେ
ଝାମ୍ପି ନେବ କାଳ କିଙ୍କର ରହିଛି ସେ ଗୋପ୍ୟାନେ ।୯।
ଞର୍ମ ଧୂର୍ମ ଜ୍ୟୋତି ଜ୍ୱାଳାର ପରେ ତାଙ୍କର ବାସ
ଞଣା ନାହିଁ ଦିବା ଶର୍ବରୀ ଲାଗିଅଛି ରାହାସ ।୧୦।
ଟାକି ବସି ବକ ପରାୟେ ନାସା ଅଗ୍ରକୁ ଚାହିଁ
ଟେକିବୁ ବାୟୁରୁ ଉଜାଣି ଯିବ ଶୂନ୍ୟେ ପଳାଇ ।୧୧।
ଠାକୁରେ ଅଛନ୍ତି ଅନାଦି ତାଙ୍କୁ ସେବାରେ ସାଧ
ଠାକୁରାଣୀ ଆଦିମାତାଙ୍କୁ କର ସର୍ବଦା ବୋଧ ।୧୨।
ଡର ନାହିଁ ଗୁରୁ ବଚନେ କର ହେଳା ହୋ ବଳେ
ଡରାଇବ କାଳ ଦେବତା ତୋର ଅନ୍ତିମ କାଳେ ।୧୩।
ଢମପଣ କରି ରହିଣ ନାହିଁଟି କେହୁ ଦିନେ
ଢଳି ପଡ଼ିବଟି ସକଳ କାଳ ବଳେ ଯତନେ ।୧୪।
ନବଦ୍ୱାର ରୁନ୍ଧି ପାରିଲେ ଯିବ ସର୍ବ ଯାତନା
ନ ଥିବଟି ତୋର କାଳକୁ କ୍ଷୁଦା ତୃଷା ଭାବନା ।୧୫।
ତରକି ତେଜିବୁ ତ୍ରିଗୁଣ ମାୟା ଦଉଡ଼ି କାଟି
ତତ୍ତ୍ୱକୁ ପାଇଲେ ତୁଟିବ ଭବ ଅନ୍ଧାର ଗୋଟି ।୧୬।
ଥୟ କର ପଞ୍ଚମନକୁ ଥିବ ହୋଇ ରହିବୁ
ଥିବାଯାଏ ପିଣ୍ଡେ ପରାଣ ଲୟେ ଲଗାଇଥିବୁ ।୧୭।
ଦାରୁବ୍ରହ୍ମ ମୂର୍ତ୍ତି ବିଜଏ ଗୋଲାହାଟ ଉପରେ
ଦରପୋଡ଼ା ପରି ଦିଶଇ ରୂପ କେ ବର୍ଣ୍ଣିପାରେ ।୧୮।
ଧରାଧାମେ ଜନ୍ମ ହୋଇଣ ଧର୍ମ କର୍ମ ନ କଲେ
ଧରା ପଡ଼ିଯିବୁ ଅବଶ୍ୟ ଚିତ୍ରଗୁପତ ପାଲେ ।୧୯।
ନାନା ରୂପ ବ୍ରହ୍ମ ରହିଛି ନାମ ତାରଟି ସାର
ନାମ ନ ଭଜିଲା ପ୍ରାଣୀଙ୍କୁ କେଭେ ନାହିଁ ନିସ୍ତାର ।୨୦।

ପଦ୍ମ ହସ୍ତେ ଶଙ୍ଖ ଚକ୍ରଟି ଗଦା ଦିଶଇ ଶୋଭା
ପୀତବାସ ବନମାଳୀ ହିଁ ମନ କରଇଁ ଲୋଭା ।୨୧।
ଫୁଙ୍କା ବନ୍ଧେ ଲୟ କରିଣ ତୁହି ଯେକାନ୍ତ କରି
ଫଣା ସପ୍ତଦଳେ ବିମଳେ ବିଜେ ଦେଖିବୁ ହରି ।୨୨।
ବହି ଯାଉଅଛି ତ୍ରିବେଣୀ ବନ୍ଧ ପାଶୁ ତହିଁରେ
ବସିଣ କମଳ ଆସନେ ଯୋଗ ସାଧିବୁ ଧିରେ ।୨୩।
ଭକ୍ତି କଲେ ମୁକ୍ତି ଦିଅନ୍ତି ଭକ୍ତ ବନ୍ଧୁ ଶ୍ରୀହରି
ଭକ୍ତ କରି ତରିଗଲେଟି କେତେ ଯେ ନରନାରୀ ।୨୪।
ମାୟା ସଂସାରରେ ତୁ ବାୟା ଆଉ ନୁହଁ ଏଣିକି
ମନ ମଧ୍ୟେ ସଦା ଭଜନ କର ଚକ୍ରପାଣିକି ।୨୫।
ଯାଉଁଳି କବାଟ ଲାଗିଛି ତୋର ନାସା ଦୁଆରେ
ଯିବା ଆସିବାକୁ ସ୍ମରଣ ବସି କରୁଥା ବାରେ ।୨୬।
ରା ଟି ରାଧିକା ଅଟନ୍ତି ମ କୃଷ୍ଣଟି ଜାଣ
ରାମ ନାମ ଧରି ଭୂଷଣ୍ଡ ହୋଇଗଲା ତାରଣ ।୨୭।
ଲାଭ ନାହିଁ ଏହି ସଂସାରେ ଲୋଭେ ଯାତନା ମୂଳ
ଲାଭ ତୁ ଅଶେଷ ଭକତି ହେଲେ ପରମ ମେଳ ।୨୮।
ବଣାହେଉ କଣା ପରି ତୁ ଭୁଲି ମାୟା ପଥରେ
ବୁଦ୍ଧି କରି ସେବ ଶ୍ରୀଗୁରୁ ଚାହିଁ ଜ୍ଞାନ ନେତ୍ରରେ ।୨୯।
ଶିଶୁମୁନା ଦ୍ୱାରେ ଯାଇଣ ଶୂନ୍ୟେ ରୂପକୁ ଦେଖ
ଶେଷ ଆସନରେ ବିଜୟେ କରିଛନ୍ତି ଅରେଖ ।୩୦।
ସୁଆଙ୍ଗ ଭଜନ ଜାଣିଲେ ମୁକତିକୁ ଲଭିବୁ
ସଂସାର ତାମସୀ ଗର୍ଭରେ ବାବୁ ଜନ୍ମ ନୋହିବୁ ।୩୧।
ଷୋଳକଳା ପୂର୍ଣ୍ଣ ହୋଇଛି ହୃଦ ମଧ୍ୟେ ତାଙ୍କରି
ଷଟପଦ ହୋଇ ପଦାବ୍ଜେ ପିଅ ମଧୁକୁ ହେରି ।୩୨।

ହରି ହରି ସଦା ବୋଲିଣ ହର ପାତେକ ରାଶି
ହରଷରେ ହେବୁ ଅନ୍ତିମ କାଳେ ବୈକୁଣ୍ଠବାସୀ ।୩୩।
କ୍ଷୀର ସିନ୍ଧୁବାସୀ ଅନାଦି ଆଦି ଶେଷଙ୍କୁ ମୋର
କ୍ଷମା ମାଗୁଅଛି ଅଧମ ହୀନ ଅଚ୍ୟୁତି ଛାର ।୩୪।



## ଡିବି ଡିବି ଚଉତିଶା

କହୁଛନ୍ତି ଜଗନ୍ନାଥ ଶୁଣ ଗୋ ରକ୍ମିଣୀ
କାଳ ଗୋଳ ହେଲା ହେବ ମେଳଛ ମାରୁଣି ।
କହୁ କହୁ କଳି ଆସିଯିବ ନୀଳଗିରି
କୁଟିଳ ଅନ୍ଧାର ସଂସାରରେ ଯିବୁ ପୂରି ।୧।
ଖଳ ଦକ୍ଷିଣୁଁ ଆସିବେ ଉତ୍ତରରେ ଗାଜିବେ
ଖଣ୍ଡ ବୁଦ୍ଧି ଦେଖି ପୂର୍ବ ବଳ ଯେ ଭାଜିବେ ।
ଖୋଳି ହେଉଥିବେ ସେ ପଶିବେ ଝସାଇ
ଖୋଜିବେ ଦମନ ବଳଛନ୍ତି କଉଁଠାଇଁ ।୨।
ଗିରି କନ୍ଦରାରୁ ମଡ଼ା ହୋଇବେ ବାହାର
ଗଜ ଅଶ୍ୱ ପାଦାତି ଯେ ଅକଳନା ବଳ ।
ଗୋରୁ ବିପ୍ର ବଧ ହେବେ ସିଂହଦ୍ୱାର ଠାଇଁ
ଗୋଡ଼ାଇ ମାରିବେ ବଳଛନ୍ତି ଯଉଁଠାଇଁ ।୩।
ଘୋର ଯେ ସଂଗ୍ରାମ ହେବ ଚବିଶ ପ୍ରହର
ଘୋଟିବ ତିମିର ଦିନ ହେବ ଅନ୍ଧକାର ।
ଘୋଡ଼ା ଟାପୁ ଘାତେ ନୀଳାଚଳ ଚମକିବ
ଘୋର ରଡ଼ି ଗୋଟାଯେକ ଶୂନ୍ୟରୁ ଶୁଭିବ ।୪।

ଉଠିବେ ତେଲେଙ୍ଗା ବଳ ଦକ୍ଷିଣ ଦିଗରୁ
ଉତୁରିଲା ମେଳେଛ ମରିବେ ସେହିଠାରୁ ।
ଉଆଁସ ତିଥି ଯେ ଦିନ ହେବ ଗୁରୁବାର
ଉଦୟ ହୋଇବେ ପୁଷ୍ୟ ନକ୍ଷେତ୍ର ସେଠାର ।୫।
ଚାରିଦିଗ ଲୋକେ ଗୁଣ୍ଡ ହୋଇଥିବେ ଜାଣ
ଚକ୍ର ଧରି ବାହାର ହୋଇବୁ ସ୍ୱୟଂ ପୁଣ ।
ଚମକିବ ଚଉଦ ଭୁବନ ମହୀଦେଶ
ଚଉରାଶି ସହସ୍ର ମେଳଛ ଯିବେ ନାଶ ।୬।
ଛୟାଳୋଇ ସସ୍ର ରାଜା ଗୁଣ୍ଡ ହୋଇଥିବେ
ଛଟକେ ଦମନବଳ ଛେଦି ପକାଇବେ ।
ଛତ୍ରେଣ ଦକ୍ଷିଣ ଦିଗୁଁ ଦମନ ଆସିବେ
ଛିକାରି ଓଡ଼ିଶା ଲୋକ ଜାତିକୁଳ ନେବେ ।୭।
ଯାଜପୁରେ ବିରଜା ଯେ ପାତିଥିବେ ରଣ
ଯୋଗ୍ନୀ ସାଥେ ବସିଥିବେ ଖର୍ପର ଘେନିଣ ।
ଯୋଗ ବିଦ୍ୟା କରୁଥିବେ ଅଗ୍ନିକୁଣ୍ଡ ଠାଇଁ
ଜଣେ ଜଣେ ବଳ ଭୋଗ ଦେଉଥିବେ ନେଇ ।୮।
ଝର ଝର ରକ୍ତନଦୀ ବହି ଠାଏ ଠାଏ
ଝସାଇ ପଶିବେ ବଳ ବୁଲ କୁଳ ଯାଏ ।
ଝୁଣିଣ ଦମନ କୁଳେ ଖାଇବେ ଲୁଚିଣ ।
ଝାଡ଼ବାଡ଼ ଲାଗିଣ ଯେ ରହିବେଟି ପୁଣ ।୯।
ନିଶ୍ଚୟେ ଯେ ମୋର ହେବ ଟିକରା ଗୋହିରି
ନିୟମ କରୁଛି ବଳ ଦେବ ସାକାମ୍ବରୀ ।
ନବଘନ କାଳିଆ ଯେ ଅଶ୍ୱ ଥିବେ ଚଢ଼ି
ନରେନ୍ଦ୍ର ଶଉଚେ ଅଶ୍ୱ ପାଣି ଦେବେ ବଢ଼ି ।୧୦।

ଟଳି ଯେ ପଡ଼ିବେ ରାଜା ନ ଥିବେ ପାଟରେ
ଟେକାଇବୁ ନେଇ ଛତ୍ର ବିପ୍ରଙ୍କ ଶିରରେ ।
ଟାହି ଯେ ଟାପରା ଲୋକେ କରୁଥିବେ ତହିଁ
ଟଳମଳ ହେଉଥିବ ସପ୍ତଦ୍ୱୀପା ମହୀ ।୧୧।
ଠାକୁର ଯେତେକ ନୀଳଗିରି ଛାଡ଼ି ଯିବେ
ଠାବ ନ ପାଇଣ ସିନ୍ଧୁ ତୀରରେ ରହିବେ ।
ଠେକ କରି ପଦ୍ମପାଦେ ଯାହାର ବିଶ୍ୱାସ
ଠିକ୍ ବେଳେ ତାହାର ଅବଶ୍ୟ ନୋହେ ନାଶ ।୧୨।
ଡାକ ଚହଳ ପଡ଼ିବ ଦେଶୁଁ ଦେଶ ଯାଏ
ଡାକିବେ ଉଦ୍ଭୁରା ପଡ଼ି ବଳ ଅପ୍ରମେଏ ।
ଡରି ଯକାଇବେ ବଳ ପୂର୍ବ ପଶ୍ଚିମକୁ
ଡେଇଁ ଅଶ୍ୱ ଚଢ଼ିଣ ମାରିବେ ଯବନକୁ ।୧୩।
ଢୋଲ ଦମା ବଜାଇ ଘୁରିବେ ବାରମ୍ବାର
ଢମେ ନାଚୁଥିବେ ଢଳି ବିନ୍ଧ୍ୟଗିରି ଠାର ।
ଢାଳେଣ ତାହାଙ୍କ ହାତ ହଣାଯେ ହୋଇବ
ଢେର ବହି ନେଉଥିବେ ଧନରାଶି ଦର୍ବ ।୧୪।
ଅନିଷ୍ଟ ଯେ ଉପୁଜିବ ଓଡ଼ିଶାରେ ପୁଣ
ଅନୁକ୍ଷଣେ ଦ୍ୱନ୍ଦ୍ୱ ବାଦ ହେଉଥିବ ଜାଣ ।
ଅଗାଡ଼ି ଉଡ଼ିବ ଯେ ବିହନ ନ ରହିବ
ଅପାଳକ ସୃଷ୍ଟି ଯାକ ମେଳଛ ମରିବ ।୧୫।
ତିନି ଲୋକ ସଙ୍ଗତରେ ତେର ଲୋକ ଜାଣ
ତେର ସସ୍ରଲୋକ ଥିବେ ରାଜା ସଙ୍ଗତେଣ ।
ତଟୁ ପଟୁ ଅଶ୍ୱଚଢ଼ି ଯୁଦ୍ଧ କରୁଥିବେ
ତଥ୍ୟବେଳ ଜାଣି ନିଶ୍ଚେ ସହସ୍ର ଧରିବେ ।୧୬।

ଥୋଇଲାର ଧନ ଖଣ୍ଡ ନେଉଥିବ ବନ୍ହି
ସ୍ଥାନୁ ପଳାଇବେ ଲୋକେ ନ ଶୁଣିବେ କେହି ।
ଥିଲା ନ ଥିଲାର ଲୋକେ ହେଉଥିବେ ସରି
ଥୋକେ ଲୋକ ପଳାଇବେ ଥୋକେ ଯିବେ ମରି ।୧୭।
ଦମ୍ଭ ଧରିଥିବା ଜନ ଗୋଟିଏ ନଥିବେ
ଦେବୀ ଉପାସକମାନେ ଧର୍ମ ହିଁ ନାଶିବେ ।
ଦରିଦ୍ର ହୋଇଯିବେ ଓଡ଼ିଶା ଲୋକ ଜାଣ
ଦୟା ଧର୍ମ ଲୋକଠାରୁ ହୋଇବ ଗୋପ୍ୟାନ ।୧୮।
ଧର୍ମ ଥିଲା ପ୍ରାଣୀମାନେ ଅବଶ୍ୟ ତରିବେ
ଧ୍ୟାନ କରୁଥିବା ଭକ୍ତ ଅବଶ୍ୟ ଦେଖିବେ ।
ଧର୍ଯ୍ୟ ଧରିଛନ୍ତି ଭକ୍ତ ଦେଖିବାର ପାଇଁ
ଧର୍ମ ପଥ ଫିଟିବ ଏଗାର ଅଙ୍କ ଠାଇଁ ।୧୯।
ନିଜେ ମା'ରୁ ହେବେ ରାଣୀ କଟକ ନବରେ
ତିନି ଦିବସରେ ଚିନ୍ତା ଗଡ଼ର ଭିତରେ ।
ନୋହିଲା ନୋହିଲା ବୋଲି କହୁଥିବେ ଥୋକେ
ନ ଜାଣିବ ମୂଢ଼ ଲୋକ ଜାଣିବେ ବିବେକେ ।୨୦।
ପୂର୍ବ ପଶ୍ଚିମର ଲୋକେ ପଳାଇ ପଶିବେ
ବାତସା ଉତ୍ତର ଦିଗୁଁ ସାଜିବଟି ଏବେ ।
ପୃଥ୍ୱୀଯାକ ଅଶ୍ୱମୟେ ହୋଇବଟି ଜାଣ
ପରମ ପୁରୁଷ ଯାହା କରିଛି ଭିଆଣ ।୨୧।
ଫେଡ଼ି ମୁଁ କହୁଛି ଏବେ ଶୁଣ ପ୍ରିୟା ମୋରି
ପୂରୁଣା ହୋଇ ନଥିବ ମନ ଯେ କାହାରି ।
ଫଡ଼କା ଧରି ଯମନ ଆସିବଟି ପୁଣ
ଫେରା ରଡ଼ି ଦେବ ହନୁ ଗୋହିରାରେ ଜାଣ ।୨୨।

ବାସୁଦେବ ଭଜନରେ ଯାହାର ବିଶ୍ୱାସ
ବଣା ନ ହୋଇବ ସେହି ନ ଯିବଟି ନାଶ ।
ବଡ଼ ବଡ଼ ପ୍ରାଣୀମାନେ ମିଥ୍ୟା କହୁଥିବେ
ବିରଜା ଖର୍ପରରେ ସେ ଅବଶ୍ୟ ପଡ଼ିବେ ।୨୩।
ଭାବିଲାର ଭକ୍ତେ ହରି କରିବେଟି ଦୟା
ଭକ୍ତ ପାଦ ଯହିଁ ନାହିଁ ତାଙ୍କୁ ବଡ଼ ମାୟା ।
ଭାବିଲାର ଭକ୍ତମାନେ ପାଇବେ ଦର୍ଶନ
ଭ୍ରମ ନୁହଁ ପ୍ରିୟ ସଖୀ ରଖିଥା ସ୍ମରଣ ।୨୪।
ମ୍ଳେଛମାନେ ମରିବେ ଯେ କୁଢ଼ କୁଢ଼ ହୋଇ
ମରି ପଡ଼ିଥିବେ ଯେ କଟକ ନଗ୍ର ଯାଇଁ ।
ମୀନ ଯୋଗେ ହସ୍ତା ନକ୍ଷେତ୍ରର ମେଳଥାଇ
ମଣ୍ଡିବେ ଯେ ସିଂହସୁତା ଅନ୍ଧକାର ମହୀ ।୨୫।
ଜଗନ୍ନାଥ ଓଡ଼ିଶାକୁ ରକ୍ଷା କରାଇବୁ
ଜଗତର ଧନଧାନ୍ୟ ବହି ଆଣିଦେବୁ ।
ଯତ୍ନ କରିଣ ତହିଁରେ ଭକତ ରଖିବୁ
ଯାଚକ ଆକୁଳ ହୃଦପଦ୍ମରେ ଭାବିବୁ ।୨୬।
ରାମଚନ୍ଦ୍ର ବୋଲିଣ ଯେ ରାଜା ଏକ ଥିବ
ରଣ ଗୋଳ କରିଣ ସେ ଧରା ଯେ ହୋଇବ ।
ରାଶି ରାଶି ଜନ ତେଣେ ଯାଉଥିବ ମରି
ରଖିବେ ବିରଜା ଚକ୍ର ଉହାଡ଼ ଯେ କରି ।୨୭।
ଲହ ଲହ ଜିହ୍ୱା ଦେବୀ ମୁଖ ବିକଟାଳ
ଲଟପଟ ରୁଧିର ଯେ ଗଳେ ପୁଷ୍ପମାଳ ।
ଲକ୍ଷେକ କାଠମାଳିଆ ହୋଇବେକ ହାଣ
ଲହରୀ ପରାଏ ବଳ ଭାସୁଥିବେ ପୁଣ ।୨୮।

ବ୍ରାହ୍ମଣ ସନ୍ନ୍ୟାସୀ ବ୍ରହ୍ମଚାରୀ ଯିବେ ହାଣ
ବୁଲିଣ ଚୌଷଠୀ ଯୋଗ୍ନୀ କରିବେ ଭୋଜନ ।
ବିମଳା କମଳା ନବ କୋଟି କାତ୍ୟାୟିନୀ
ବୋଧ ହୋଇବେ ମେଳେଛ ମାରିଣ ସେ ପୁଣି ।୨୯।
ଶିରୀ ପୁରଷୋତ୍ତମ ଯାତ୍ରା ପଡ଼ିଆ ହୋଇବ
ଶ୍ରୀକ୍ଷେତ୍ରେ ଆମ୍ଭର ଭୋଗରାଗ ହିଁ ନୋହିବ ।
ଶ୍ରୀମନ୍ତ ଗୋସାଇଁମାନେ ନ ଧରିବେ ମନ
ଶ୍ରୀଗୁରୁ ଚରଣେ ଯେ ବିଶ୍ୱାସ କରି ମନ ।୩୦।
ଷୋଳଶ ଚଉବନ ଯେ ଯେଉଁକାଳେ ହେବ
ସତ୍ୟ ହିଁ ଘଟେ ଘଟେ ପ୍ରକାଶ ପାଇବ ।
ସନ୍ଥଜନ ପ୍ରାଣୀମାନେ ମାଗୁଥିବେ ଭିକ
ସାଧୁ ଚିହ୍ନିବାକୁ କେହି ନାହିଁ ତେଣୁ ଦୁଃଖ ।୩୧।
ସ୍ୱରୂପ କହିଛି ଅନ୍ତ ନ ପାଇବେ ଥୋକେ
ଷାଠିଏ ପାଇକ ଘାତେ ପଳାଇବେ ଲୋକେ ।
ସତ୍ୟ ଥିଲା ପ୍ରାଣୀମାନେ ଅରକ୍ଷ ନୋହିବେ
ସାର ଭକ୍ତ ଆସି ଶାଢ଼ୀ ଶିରରେ ବାନ୍ଧିବେ ।୩୨।
ହୃଦ୍‌ଗତେ ଦେଖ ତେର ଅଙ୍କର ମଧ୍ୟରେ
ହୁରି ଦେବେ ଭକ୍ତ ଗୋଦାବରୀ ନଦୀ ତୀରେ ।
ହୋଇବ ଦେବ ଦାନବ ଯୁଦ୍ଧ ସମାପତ
ହୋଇବ ହିଁ ଦୁଷ୍ଟ ଖଣ୍ଡ ଅବଶ୍ୟ ନିପାତ ।୩୩।
କ୍ଷେତ୍ରବର ପ୍ରଭୁଙ୍କ ଚରଣେ ମୋର ସେବା
କ୍ଷୋଭ ନ କରିବ ମୋତେ ଫେଡ଼ିଣ କହିବା ।
କ୍ଷଣେ ଦଣ୍ଡେ ନିମିଷେ ହୋ ହରିନାମ ଘୋଷ
କ୍ଷମା କରି ଦୋଷ କହେ ସେ ଅଚ୍ୟୁତ ଦାସ ।୩୪।



## ତନ୍ତୀ ଚଉତିଶା

ଶୁଣିମା ସୁଜନେ ତନ୍ତୀ ଅରିଷ୍ଟି
ତନ୍ତୀ ପୁଣ ହେଲା ଯହିଁରେ ଦୃଷ୍ଟି ।
କଙ୍କଣା କଣ୍ଡା ବନ୍ଧ ପକାଇଲା
ଖରିଡ଼ିମାନ ବଳି ଖଞ୍ଜ କଲା ।୧।
ଗୋଲହାଟ ସୂତା କାଢ଼ଇ ଲୁଣ୍ଡି
ଘରେ ଘରେ ପଶି ଲୁହ ଦରାଣ୍ଡି ।୨।
ଉଠଇ ବସଇ ଲୁଣ୍ଡି ଶାଳର
ଙଣା ନୋହେ ଲୁଣ୍ଡି ବାର ହାତର ।୩।
ଚାରି କିଳା ବେନି ମଧ୍ୟରେ ଥୁଅ
ଛଡ଼ ଚକ୍ରରେ ଖଞ୍ଜାଇଛି ଖୁଅ ।୪।
ଜଞ୍ଜାଳ ସୂତା ଯେ ଅଡୁଆ କଲା
ଝଗଡ଼ ଚକ୍ରକୁ ଛଡ଼ା ହୋଇଲା ।୫।
ନିରିବାଣ ତନ୍ତୀ ବିନ୍ଧାଣୀ
ନୀଳକଣ୍ଠ କରି ଜାଣଇ ପୁଣି ।୬।
ଟେକି ଅଣଚାଣ ଦେଇଛି ଭାଙ୍ଗ
ଠକାଇ ଅଛି ଫାଶ ଆଠଖଣ୍ଡ ।୭।
ଡାକ ଢୁକ ରଡ଼ି ଅନନ୍ତ ଧ୍ୱନି
ଢଳିଲା ଚେତନା କୁଳ ବିନ୍ଧାଣୀ ।୮।
ଅଣଆୟତ କଣ୍ଟା ପାନିଆରେ
ଆୟତ ଅଙ୍କୁଶ ତାହାକୁ କରେ ।୯।
ତନ୍ତୀ ବାପୁଡ଼ାଯେ ଅତି ମଗନ
ସ୍ଥିର ହୋଇ କରେ କର୍ମ କୀର୍ତ୍ତନ ।୧୦।

ଦୟାବନ୍ତ ସେହୁ ଦୁଃଖୀ ସଙ୍ଗାଳି
ଧୈର୍ଯ୍ୟ ଦେଉଛି ବିଚିତ୍ର ନଳି ।୧୧।
ନୟନେ ନାଚଇ ତନ୍ତୁ ଯୋଡ଼ିକ
ନ ଚାହିଁଲେ ଚାହେଁ ଶୁକ ସନକ ।୧୨।
ପହଣ୍ଡପ ଜାଣେ ପ୍ରକୃତି ପର
ଫାନ୍ଧ ବିନ୍ଧି ଜିହ୍ୱା ଅଧର ଶର ।୧୩।
ବସିଛି ମନକୁ ଧିଆନେ ଥୋଇ
ଭାଙ୍ଗ ଶ୍ରୀକଟୁ ଦୟାବନ୍ତ ସେହି ।୧୪।
ମୋହ ମନ ମତ୍ତ ଆଡ଼ମାଢ଼େଣି
ଜାଣି ମାଡୁଅଛି ଯନ୍ତ୍ର କିଳିଣୀ ।୧୫।
ରଖିଛି ମନକୁ ଏକାଗ୍ରେ ନେଇ
ଲହଡ଼ି ବାଜିଲେ ଦେବ ଛଡ଼ାଇ ।୧୬।
ବଙ୍କନାଳ ପାଣି ଚଳଇ ଧୀର
ଶଙ୍କା ନାହିଁ କାହିଁ ହୋଇବ ସ୍ଥିର ।୧୭।
ସହଜ ସୂତ୍ର ହିଁ ଅଛି ତହିଁର
ସହସ୍ରାର ବନ୍ଧ ତଳୟେ କର ।୧୮।
ହାତକୁ ହାତ ବୁଣେ ଅତି ସ୍ନେହୀ
କ୍ଷମେ ଅଚ୍ୟୁତି ସେ ତନ୍ତୀର ଦେହୀ ।୧୯।



## ତତ୍ତ୍ୱ ଭଜନ ଚଉତିଶା

କୃଷ୍ଣ କହନ୍ତି ରାଧାଙ୍କୁ କହିବା ଓଁକାର ବ୍ରହ୍ମ ଭେଦକୁ ।
ରାଧିକେ ଗୋ !
କହି ତୋଷିବା ତୁମ୍ଭ ମନକୁ । ରାଧିକା ଗୋ ।୧।

ଖଡ଼ି ଗୋଟାଳି ଶ୍ରୀକରେ କ୍ଷିତି ଆଉଁସି ଲେଖିଲେ ତା'ପରେ ।
ରାଧିକେ ଗୋ !
ଖଞ୍ଜି ଓମତି ନାଦ ବିନ୍ଦୁରେ । ରାଧିକେ ଗୋ ।୨।
ଗୋଟିଏ ଅକ୍ଷର ଏହି ଗାଢ଼େ ନେତ୍ର ରଖ ଧ୍ୟାନ ଲଗାଇ ।
ରାଧିକେ ଗୋ !
ଗଳୁଛି ସଦା ଅମୃତ ନଈ । ରାଧିକେ ଗୋ ।୩।
ଘଟଣ ହକାର ଦେହିଁ ଘେନ୍ ଚନ୍ଦ୍ର ସୂର୍ଯ୍ୟ ଶିଖି ପୁଛଇଁ ।
ରାଧିକେ ଗୋ !
ଘଟେ ଘଟେ ରାଧାକୃଷ୍ଣ ଦୁଇ । ରାଧିକେ ଗୋ ।୪।
ଓଁକାରେ ଏକ ଅକ୍ଷର ଅଛନ୍ତି ଯେ ରାଧାକୃଷ୍ଣ ତହିଁର ।
ରାଧିକେ ଗୋ !
ଅଟେ କ୍ଷୀର ନୀର ଯେ ପ୍ରକାର । ରାଧିକେ ଗୋ ।୫।
ଚାରି ଅର୍ଦ୍ଧ ମାତ୍ରା ବିନ୍ଦୁ ଚିହ୍ନିଲେ ପାରିହେବୁ ଭବ ସିନ୍ଧୁ ।
ରାଧିକେ ଗୋ !
ଚାଖ ଖଣ୍ଡସାର ପ୍ରାୟେ ମଧୁ । ରାଧିକେ ଗୋ ।୬।
ଛଡ଼ ଚକ୍ରରେ ପଚାଶ ଛପନ କୋଟି ଜୀବର ପ୍ରକାଶ ।
ରାଧିକେ ଗୋ !
ଛକିଛି କୃଷ୍ଣ ରାଧା ଅଶେଷ । ରାଧିକେ ଗୋ ।୭।
ଯେଉଁ ପୃଥିବୀରେ ରହି ଜଳ ଅଗ୍ନି ବାୟୁ ଆକାଶ ହୋଇ ।
ରାଧିକେ ଗୋ !
ଜାଣ ପଞ୍ଚ ଭୂତେ ପଞ୍ଚ ବାଇ । ରାଧିକେ ଗୋ ।୮।
ଝଟତିରେ ପ୍ରାଣ ପ୍ୟାନ ଝରୁଛି ସମାନ ଉଦାନ ବ୍ୟାନ ।
ରାଧିକେ ଗୋ !
ଝିମିଟେ ଜେହ୍ନେ ପଞ୍ଚ ପବନ । ରାଧିକେ ଗୋ ।୯।

ନିତ୍ୟେ ଜ୍ଞାନ ଧ୍ୟାନ ତତ୍ତ୍ୱ ନେତ୍ରେ ଦେଖ ଜୀବ ପରମ ତତ୍ତ୍ୱ ।
ରାଧିକେ ଗୋ !
ନିଷ୍ଟଳେ ରଖ ପଞ୍ଚମନ ତ । ରାଧିକେ ଗୋ ।୧୦।
ଟାକ ମନ ସୁମନରେ ଟିକାଅ କୁମର୍ନ ଅମନ ପୁରେ ।
ରାଧିକେ ଗୋ !
ଟାଣ ନ ରହିବ ଅମନରେ । ରାଧିକେ ଗୋ ।୧୧।
ଠିକେ ପରା ରମା କାମ ଠକିଲେ ସେ ପରା ଧାମ ପରମ ।
ରାଧିକେ ଗୋ !
ଠୁଲେ ଅଚ୍ୟୁତାନନ୍ଦଙ୍କ ସମ । ରାଧିକେ ଗୋ ।୧୨।
ଡରି କହେ ନାମ ବୁଦ୍ଧି ଡାକରେ ବିବେକ ଆଶ୍ରୟ ସିଦ୍ଧି ।
ରାଧିକେ ଗୋ !
ଡୋଳେ ଦେଖ ପଞ୍ଚସ୍ୱର ବିଧି । ରାଧିକେ ଗୋ ।୧୩।
ଢଳି ଓଁକାର ଇକାର ଢାଙ୍କିଛି ଆକାର ଉକାର ସ୍ୱର ।
ରାଧିକେ ଗୋ !
ଢାଳେ ତେଜି ଭଜ ତୁ ରକାର । ରାଧିକେ ଗୋ ।୧୪।
ଅଣ ଆୟତ୍ତ ତୁ ନୁହଁ ଅଣାକାର ଠାରେ ଲୟ ଲଗାଅ ।
ରାଧିକେ ଗୋ !
ଅଣଚାଶ ବାୟୁରେ ତା’ ଥୁଅ । ରାଧିକେ ଗୋ ।୧୫।
ତା’ର ପୃଥ୍ୱୀ ପ୍ରାଣ ପ୍ୟାନ ତହିଁ କାମ ରମା ବୀଜ ରୂପେଣ ।
ରାଧିକେ ଗୋ !
ତହିଁ ଓଁକାର ଘର ପ୍ରମାଣ । ରାଧିକେ ଗୋ ।୧୬।
ସ୍ଥିତ ଲକାର ହକାର ଥାଇ ଦେଖ ହକାର ସେ ପ୍ରକାର ।
ରାଧିକେ ଗୋ !
ସ୍ଥାପ ପଞ୍ଚ ବୀଜ ଏ ପ୍ରକାର ରାଧିକେ ଗୋ ।୧୭।

ଦେଖ ରାମ ରମା କନ୍ଦ ଦର୍ଶନ କର ସାଧୁ ଗୋପୀବୃନ୍ଦ ।
ରାଧିକେ ଗୋ !
ଦଣ୍ଡେ ଦଣ୍ଡକ ଅପ୍ୟାନ ବାନ୍ଧ । ରାଧିକେ ଗୋ ।୧୮।
ଧାୟ ସୁମନେ କାମୁକ ଧରିବା ଓଁ କାର ହରେ ନାମକୁ
ରାଧିକେ ଗୋ !
ଧର ଚର୍ତୁବୀଜର କାରକୁ । ରାଧିକେ ଗୋ ।୧୯।
ନିତ୍ୟରେ ଲଗାର କାମ ନିର୍ଣ୍ଣୟ କର କୃଷ୍ଣ ନାମ ବ୍ରହ୍ମ ।
ରାଧିକେ ଗୋ !
ନାହିଁ କେହି ବ୍ରହ୍ମ ଭକ୍ତ ସମ । ରାଧିକେ ଗୋ ।୨୦।
ପରମ ପୁରୁଷ ହରି ପ୍ରବଣ ରୂପେ ସର୍ବଘଟେ ପୁରି ।
ରାଧିକେ ଗୋ !
ପ୍ରୀତି କଲେ ତୁ ପାଉବୁ ଧରି । ରାଧିକେ ଗୋ ।୨୧।
ଫନ୍ଦାକର ପରାବୃଦ୍ଧି ଫେଡ଼ି କହିଲେ ଓଁକାର ହରାଦି ।
ରାଧିକେ ଗୋ !
ଫାନ୍ଦି ଏକାର ପଞ୍ଚ ସମ୍ପାଦି । ରାଧିକେ ଗୋ ।୨୨।
ବଳଦେବ ହରେ ପରା ବେଣ ନନ୍ଦ ସାଧୁ ଯତନେ ତ୍ୱରା ।
ରାଧିକେ ଗୋ !
ବ୍ରହ୍ମ କୁଣ୍ଡଳୀ କହିଲେ ସାରା । ରାଧିକେ ଗୋ ।୨୩।
ଭାବେ ଅର୍ଦ୍ଧମାତ୍ରା ବାୟୁ ଭାବେ ଉଦାନ ବ୍ୟାନ ବାଇ ହେଉ ।
ରାଧିକେ ଗୋ !
ଭାବେ ଭାବ ବିନୋଦିଆ ଥାଉ । ରାଧିକେ ଗୋ ।୨୪।
ମହାମନ୍ତ୍ର ଯେ ବିବେକ ମାତ୍ରା ଅର୍ଦ୍ଧ ହରି ଇକାର ଲେଖ ।
ରାଧିକେ ଗୋ !
ମନ୍ତ୍ର ମୂର୍ତ୍ତି ପଞ୍ଚୁ ବିଜେ ଦେଖ । ରାଧିକେ ଗୋ ।୨୫।

ଯାଗ ଜ୍ୟୋତି ଶ୍ୟାମ ଦାମ ଯାହାକୁ ବିଶ୍ୱାସ କଲେ ସେ ପ୍ରେମ ।
ରାଧିକେ ଗୋ !
ଯୁଗ ସତ୍ୟରେ ମୋହିନୀ ନାମ । ରାଧିକେ ଗୋ ।୨୬।
ରବିମଣ୍ଡଳ ଆକାଶ ରାତ୍ର ଦିନ ବ୍ୟାନ ପବନ ବାସ ।
ରାଧିକେ ଗୋ !
ରହି ଅମନେ ପରମ ହଂସ । ରାଧିକେ ଗୋ ।୨୭।
ଲୋକ ଆଶ୍ରିତ ଅକ୍ଷର ଲେଖି ହରି ପଞ୍ଚବୀଜ ବିନ୍ଦୁର ।
ରାଧିକେ ଗୋ !
ଲବେ ଧର୍ମ ବ୍ରହ୍ମରେ ବିହର । ରାଧିକେ ଗୋ ।୨୮।
ବ୍ରହ୍ମକୁ ତୁ ଲଏକର ବଣା ନୋହି ହେତୁ ଚିତ୍ତରେ ଧର ।
ରାଧିକେ ଗୋ !
ବଡ଼ ଗହନ ଅଟେ ସେ ପୁର । ରାଧିକେ ଗୋ ।୨୯।
ଶରଣ ପଶ ତା' ଠାରେ ସତ୍ୟ ଶାନ୍ତି ଦୟା କ୍ଷମା ନିଧିରେ ।
ରାଧିକେ ଗୋ !
ସର୍ବ ତ୍ୟାଗ କର ନିର୍ମାୟାରେ । ରାଧିକେ ଗୋ ।୩୦।
ଷଡ଼ଚକ୍ର ଭେଦି ଯାଉ ସିଷୁମ୍ନା ଘରେ ତଲୟେ କର ।
ରାଧିକେ ଗୋ !
ଶଠ ପବନେ ହେବ ବିଚାର । ରାଧିକେ ଗୋ ।୩୧।
ସାଧିଲେ ସମାଧି ଲାଭ ସହଜରେ ତା'ର ଦର୍ଶନ ହେବ ।
ରାଧିକେ ଗୋ !
ସଂସାର ହେତୁ ଆଉ ନ ଥିବ । ରାଧିକେ ଗୋ ।୩୨।
ହରେ ହରେ ତୁ ସୁମର ହରଣ କରିବେ ଦୁଃଖ ତୋହର ।
ରାଧିକେ ଗୋ !
ହରି ପଦ ତୁହି ସେବା କର । ରାଧିକେ ଗୋ ।୩୩।

କ୍ଷଣେ ନ ଛାଡ଼ି ସେ ନାମ କ୍ଷମାନିଧି ଠାରେ ପଶ ଶରଣ ।
ରାଧିକେ ଗୋ !
କ୍ଷମା ମାଗେ ଅଚ୍ୟୁତି ଅଧମ । ରାଧିକେ ଗୋ ।୩୪।



## ପିଣ୍ଡ-ବ୍ରହ୍ମାଣ୍ଡ ଚଉତିଶା

କାଳିନ୍ଦୀ ହ୍ରଦେ କମଳ ଫୁଟିଛି
ଖୀନ ନାଳେ ନିରଞ୍ଜନ ଖେଳୁଛି ।
ଗଗନ ଶିଖରୁ ଗୋଲାହାଟ ପୁର
ଘଟଣ ପ୍ରତିମା ବିଜେ ତଟର ।
ଉଦେ ଅସ୍ତେ ହୋଇ ଚିହ୍ନ ଯେ
ଚାହାଁନ୍ତା କହନ୍ତା ବହନ୍ତା ଶୁଣନ୍ତା ଏକା ଘରେ ଭିନ୍ନ ଭିନ୍ନ ଯେ ।୧।
ଛନ୍ଦି ଚଉବନ ଛପନେ ରସ
ଜୀବ ପରମ ଏକା ଘରେ ବାସ ।
ଝର ଝର ତିନି ଧାର ଝରୁଛି
ନାବ ଖଟାଇ ତରାଇ ବସିଛି ।
ଟେକି ସେ ବାହା ଉଜାଣି ଯେ
ଠୂଳ ଶୂନ୍ୟ ପରେ ବିଳ ଯେ ରଚିଛି ଗୁରୁ ସେବିଥିଲେ ଜାଣିଯେ ।୨।
ଡିମ୍ବର ଫିଟିଛି ତାଳୁ ଦୁଆର
ଢେଉ ପବନ ମାରଇ ନାସାର ।
ଅନାହତରୁ ଶବଦ ଶୁଭୁଛି
ତ୍ରିପୁରା ତ୍ରିକୂଟେ ବାସ କରିଛି ।
ଥୟ କର ପଞ୍ଚମନ ଯେ
ଦେଉଳ ବାହାରେ ନିଆଁ ରହିଅଛି ପାଇଲେ କଣ୍ଟ ଦର୍ଶନ ଯେ ।୩।

ଧ୍ୱନିକ ଜାଗି ବିବରେ ପଶିବୁ
ନିରାକାର ନିରଞ୍ଜନ ଭେଟିବୁ ।
ପଲକ ନ ପାଡ଼ି ରହିବୁ ଯେବେ
ପୁଷ୍କାବନ୍ଦେ ନୃତ୍ୟ ଦେଖିବୁ ତେବେ ।
ବୃନ୍ଦାବନେ ବିଜେ ହରି ଯେ
ଭକତ ଭାବକୁ ଲୀଳା ଆଚରିଣ ଘଟେ ଘଟେ ଛନ୍ତି ପୂରି ଯେ ।୪।
ମୁକୁନ୍ଦ ମାଧବ ମଧୁସୂଦନ
ଜୀବ ପରମ ନୁହେଁ ଭିନ୍ନ ଭିନ୍ନ ।
ରାଉଛି ପରମ ଶୂନ୍ୟରେ ରହି
ଲହଡ଼ି ମାରୁଛି ସୁନାମ ବାଇ ।
ବଙ୍କନାଳେ ଆତଯାତ ଯେ
ଶୂନ୍ୟର ପୁରୁଷ ଶୂନ୍ୟେ ରହିଅଛି ଜୀବର ପରମ ତତ୍ୱ ଯେ ।୫।
ଅକାର ଉକାର ମକାର ତିନି
ଓଁକାର ଅକ୍ଷର ଭେଦର ଧ୍ୱନି ।
ହରେ ଅଷ୍ଟନାମ ରାମାଦି ଚାରି
କୃଷ୍ଣ ଚାରି ନାମ ତା' ମଧ୍ୟେ ହରି ।
କ୍ଷମାକର ମୋର ଦୋଷ ଯେ
ଛନ୍ଦି ଚଉତିଶା ଜଣାଣ କରୁଛି ଅଧମ ଅଚ୍ୟୁତି ଦାସ ଯେ ।୬।



## ବ୍ରହ୍ମଜ୍ଞାନ ଚଉତିଶା

ଦାସେ ହୋ !
କଥାଯେ ପଡ଼ିଲା ମନରେ ।
କଳିଯୁଗ ଦେଖି କରଡ଼ିଆ ମାଳ ପକାଇ ଅଛ କି ଗଳାରେ ।୦।

କାହୁଁ କ୍ଷୋଳ ନାମ କିରୂପେ ହୋଇଲା ତ୍ରିବୀଜ ମିଶାଇ ବିଚାର ।
ଖଡ଼ି ଘେନି ପଞ୍ଚତତ୍ତ୍ୱେ ବିଚାରିଲେ ଲେଖାରେ ହେଉଛି ପନ୍ଦର ।
ଦାସେ ହୋ !
ଗଲା କାହିଁ କାହୁଁ ନଇଲା ।
ଗୁରୁ ଯେଉଁ ମହାମନ୍ତ୍ର ଦେଇଗଲେ ସେ କାହିଁ ବିଶ୍ରାମ ହୋଇଲା ।୧।
ଘେନିଅଛ ଟିକି ଉପଦେଶ ମନ୍ତ୍ର ସଦଗୁରୁଙ୍କୁ ସେବିବାରୁ ।
ଉଦୟେ କେଉଁ ବୀଜରୁ କେଉଁ ମନ୍ତ୍ର ବୀଜ ଜନମିଲା କାହିଁରୁ ।
ଦାସେ ହୋ !
ଚିତା କାଟିଲେ ନ ତରିବା ।
ଚିଆଁଇ ଚଇତନ ମନ ଏକ କର ଧ୍ୟାନରେ କାହାକୁ ଧରିବା ।୨।
ଛଡ଼ଚକ୍ର ଯନ୍ତ୍ର ବଖାଣ ହୋଇଲେ ବାରମାତ୍ରା ତହିଁରେ ବସେ ।
ଜପକଲେ ମନ୍ତ୍ର ମୂର୍ତ୍ତିବନ୍ତ ହୁଏ ବୋଲି କେମନ୍ତ ସେ ।
ଦାସେ ହୋ !
ଝରମୁଣ୍ଡରେ କି ଦେଖିଲା ।
ଝୋଲାକାନ୍ଥ ବାସ ଶୁଆଁଗିଲା କେଣ ବୈଷ୍ଣବ ହୋଇଣ ବସିଲା ।୩।
ନିରନ୍ତରେ ନାମ ଆସ୍ୱାଦନେ ଥାଅ କେଉଁ ସ୍ୱାଦ ତହୁଁ ପାଉଛ ।
ଟେକିଦିଅ କେତେ ଥାଳି ପତ୍ରେ ଅନ୍ନ ଉଚ୍ଛିଷ୍ଟ କାହିଁରେ ଧୋଉଛ ।
ଦାସେ ହୋ !
ଠକିଲା ସଂସାର ସାଗରେ ।
ଠେଁସା ପଉରୁଷ କିଛି ନ ପାଇଲା ଦୟାକର ଦୁଃଖୀ ଜନରେ ।୪।
ଡରିବ ନାହିଁ ମୁଁ ଯାହା ପଚାରୁଛି ଜାଣିଥିଲେଟି କହିଦେବ ।
ଢାଳେ ହେଁ ଯେବେ ମୂର୍ଖ ହୋଇଥିବ ସଦ୍‌ଗୁରୁଙ୍କୁ ଯେ ସେବିବ ।
ଦାସେ ହୋ !
ଆଣିଥିଲେ କି ଘେନିଯିବ ।
ଅଣଚାଣ ନେଇ ପାଞ୍ଚରେ ମିଶାଇ ଚଉବନରେ ବାରିଦେବ ।୫।

ତ୍ରିଅ ତତ୍ତ୍ୱ ବୋଲି ଯାହାକୁ ବୋଲନ୍ତି ହରେ ରାମ କୃଷ୍ଣ ଯେ ତିନି ।
ଥୟେକରି ଥାଅ ଯନ୍ତ୍ର ମନ୍ତ୍ର ତନ୍ତ୍ର ଶ୍ରୀଗୁରୁ ଆଶ୍ରେ କରି ଘେନି ।
ଦାସେ ହୋ !
ଦିନୁଁ ଦିନୁଁ ଦିନ ଯାଉଛି ।
ଦେଉଳ ଦୁଆରେ ଦିଅଁ ଦରଶନ ଗଙ୍ଗା କେଉଁଠାରୁ ବହୁଛି ।୬।
ଧ୍ୟାନକରି ଯେତେବେଳେ ବସିଥାଅ ଚକ୍ଷୁଁ ପବନ ତୋଳିଆଣି ।
ନିର୍ବିକାର ଜ୍ୟୋତି ପ୍ରକାଶ ହୋଇଲେ କି ପୂଜାବିଧି ଦିଅ ଆଣି ।
ଦାସେ ହୋ !
ପରମାନନ୍ଦଙ୍କୁ ଦେଖୁଛି ।
ପରାପର ନାହିଁ ଯାହାର ସେ ପୁଣି ଖିଳ ଅଖିଳରେ ପୂରିଛି ।୭।
ଫୁଲାଇ ହୋଇ ଯେ ଦାଣ୍ଡେ ଚାଲୁଥାଅ ଫେରିଯାଅ ଦେଶାନ୍ତରକୁ ।
ବାରିଦିଅ ବିନ୍ଦୁ ବ୍ରହ୍ମ ନିରାକାର ଉମାପତି ବୋଲି କାହାକୁ ।
ଦାସେ ହୋ !
ଭଗବତ ଗୀତା ଅର୍ଥରେ
ଭକତ ଅଚ୍ୟୁତ ନ ଜାଣି ବୋଲଇ ବିଚାରିବା ସାଧୁସଙ୍ଗରେ ।୮।
ମହତ ଗୁଣେ ମହତ ବୋଲି ସିନା ସାଧୁ ଗୁଣ ଥିଲେ ଗୁଣନ୍ତୁ ।
ଜାଣିଥିଲେ ଭଣ୍ଡ ଭକତ ବୋଲାନ୍ତି ବୈଷ୍ଣବର କେଉଁ ମତୁଁ ।
ଦାସେ ହୋ !
ରୂପ ଦେଖି ଭୋଳ ହୋଇଲ ।
ରୂପ ଭିତରେ ତ ଅରୂପ ବିଜୟେ ତାହା ତ କେହି ନ ଦେଖିଲ ।୯।
ଲାଜ ପାଇ ଥୋକେ ଟାଣି ହେଉଥାନ୍ତି ତରାଟନ୍ତି ଆଖି ଦେଖାଇ ।
ବଡ଼ ବଡ଼ ମାଳା ଗଳାରେ ପକାଇ ବୋଲୁଥାନ୍ତି ଆମ୍ଭେ ଗୋସାଇଁ

ଦାସେ ହୋ !
ସୂତ୍ରେ ମେରୁମାଳା କେମନ୍ତ ।
ସଖା ସଙ୍ଗେ ଥିବ ମାଳ ଗୁନ୍ଥି ଦେବ ତ୍ରିଗୁଣ ତ୍ରିବୀଜ ସହିତ ।୧୦।
ଶେଷଦେବ ଶିରେ ଶ୍ରୀନିତ୍ୟ ରାହାସ ମହା ରାହାସ କେ ଶକତି ।
ସେ ସୁଧା ଅଧରେ ମଣୋଇଁ ପ୍ରସାଦ ବିଜୟେ କାହିଁ କରିଛନ୍ତି ।
ଦାସେ ହୋ !
ହରେ ରାମ କୃଷ୍ଣ ଭଜନ ।
ହୃଦୟ ପଦ୍ମ କେଶର ଉଲ୍ଲସଇ କରୁଥା ନାମ ସଂକୀର୍ତ୍ତନ ।୧୧।
ସଂସାର ମାୟା ଛାଡ଼ିଲ କି ତୁମ୍ଭେ ତୁମ୍ଭଙ୍କୁ ମାୟା ଛାଡ଼ିଦେଲା ।
ଛାଡ଼ି ନାହିଁ କେହି କାହାକୁ ସୁଜନେ କାୟାରୁ ମାୟା ଛାଡ଼ିଗଲା ।
ଦାସେ ହୋ !
କ୍ଷାତି ଅଚ୍ୟୁତ ଦାସ କେହ ।
କ୍ଷମା ଦୟା ଥିଲେ ସୁଜ୍ଞାନୀ ବୋଲାଏ ବଣା ନାହିଁ କିଛି ଏ ଦେହେ ।୧୨।



## ଭକ୍ତ ଆରତ ଚଉତିଶା

କରୁଛି ଜଣାଣ ଛାମୁରେ ଆହେ କୃପାସାଗର ।
କେମନ୍ତେ ଏ ଭବୁଁ ତରିବି ବୁଦ୍ଧି ନ ଦିଶେ ମୋର ।୧।
କ୍ଷଣେ ସାଧୁ ସଙ୍ଗେ ନ ବସି ବୃଥା ଗଲା ମୋ ଦିନ ।
କ୍ଷିତିରେ ଜନମ ହୋଇଣ ହଜାଇଲି ମୁଁ ଜ୍ଞାନ ।୨।
ଖୁପତ ଅଟେ ଗୁରୁ ଜ୍ଞାନ ଘୋଷି ନ ପାରେ ମୁହିଁ ।
ଗଲାବେଳେ କିସ ଘେନିଣ ଯିବି ସଙ୍ଗତେ ମୁହିଁ ।୩।
ଘୋଷିଥିଲି ତୁମ୍ଭ ନାମକୁ ଏବେ ନୋହିଲା ଦୃଶ୍ୟ ।
ଘରେ ପଶି ଏବେ କାଳ ସେ ମୋତେ କରେ ଅଦୃଶ୍ୟ ।୪।

ଉପାୟ ଆଉ ନ ଦିଶଇ ତୁମ୍ଭ ବିନୁ ଗୋସାଇଁ ।
ଉଦ୍ଧାର କି ରୂପେ ହୋଇବି ଭବସାଗରୁ ମୁହିଁ ।୫।
ଚାହୁଁ ଚାହୁଁ ଅନ୍ଧ ହୋଇଲି ଏହା କର୍ମରେ ଥିଲା ।
ଚକ୍ରଧର ବାରେ କରୁଣା କିଞ୍ଚିତରେ ନୋହିଲା ।୬।
ଛାଡ଼ି ସବୁ ଆଶା ଭରସା ତୁମ ପାଦପଦ୍ମରେ ।
ଛାର କିବା ଦୁଃଖ ମାତର କରିପାରେ ମୋହରେ ।୭।
ଜଗିଅଛି ଯମ ଡଗର ଛାଡ଼ି ନ ଦେବ ବାଟ ।
ଯିବି ଆଉ କେଉଁ ବାଟରେ ହେଲା ବଡ଼ ସଙ୍କଟ ।୮।
ଝୁରୁଅଛି ରାତ୍ର ଦିବସେ ତେଣୁକରି ଯେ ମୁହିଁ
ଝିମିଟିରେ ବାନ୍ଧି ଘେନିଣ ଦେବେ ଯମକୁ ନେଇ ।୯।
ନିଶ୍ଚୟ ଯାହା ସେ ଅର୍ଜିଛି କେହୁ କରିବ ଆନ ।
ନିନ୍ଦା ହେବ ତୁମ୍ଭ ବାନାକୁ ଏବେ ବୁଝ ଆପଣ ।୧୦।
ଟାଣ ନ ରହିବ ଜୀବର ଟାକି ବସିଛି ଯମ ।
ଟିକିଏ କରୁଣା ନୋହିଲା ମୁଁ ଯେ ମୂଢ଼ ଅଜ୍ଞାନ ।୧୧।
ଠିକେ ଠାକୁରଙ୍କ ଅଭୟ ପାଦପଦ୍ମକୁ ଆଶ ।
ଠୁଳ ଚରଣରେ ଶରଣ ଦୀନ ଅଚ୍ୟୁତ ଦାସ ।୧୨।
ଡାକ ଦେବେ ଚଣ୍ଡୀ ଚାମଣ୍ଡା କମ୍ପି ଉଠିବ ମହୀ ।
ଡରିବେ ସଂସାର ଜନ ଯେ ଦେଶେ ହୁରି ପଡ଼ଇ ।୧୩।
ଡାଙ୍କେଣୀ ମୁଖରେ ପଡ଼ିବେ ଡର ଘୋଟି ଆସିବ ।
ଢାଙ୍କି ରଖିଥିବ ଧନକୁ ବାସୁକି ହରି ନେବ ।୧୪।
ଅଣାକାର ମନ୍ତ୍ର ଭଜନ ଯେଉଁ ଜନ କରିବେ ।
ଅଗାଧ ସମୁଦ୍ର ମଧ୍ୟରୁ ସେହୁ ତରି ଆସିବେ ।୧୫।
ତେରଜଣ ଯେତେବେଳେ ସେ ମେଳି ହୋଇଣ ଯିବେ ।
ତେତିକି ବେଳକୁ ତରୁଛି ପ୍ରଭୁ ଦୟା କରିବେ ।୧୬।

ସ୍ଥାନକୁ ଛାଡ଼ଣ ବିରଜା ଯେବେ ହେବେ ବାହାର
ଥିବେ ଯୋଗ୍ନୀଗଣ ସଙ୍ଗତେ ଘେନି ସେ ଅନୁଚର ।୧୭।
ଦିନୁଁଦିନ ଗୋଳ ହୋଇବ ଦେବ ଯବନ ଧାଡ଼ି ।
ଦିଗ ଭାଗ ଆଉ ନ ଦିଶେ ସୈନ୍ୟ ଆସିବେ ମାଡ଼ି ।୧୮।
ଧରିଥିବେ ହାତେ ଖର୍ପର ଦେବୀ ଯେ ମହାମାୟୀ ।
ଧରି ମୋଡ଼ିଦେବେ ବେକକୁ ଅଚ୍ୟୁତ ଦାସ କହି ।୧୯।
ନିରାକାର ମନ୍ତ୍ର ଭଜନ ଯେଉଁମାନେ କରିବେ ।
ନିଶ୍ଚୟେ ତାହାକୁ ରଖିବେ ତିନି ସତ୍ରେ ପୂରିବେ ।୨୦।
ପୃଥୀ ଭାରାଭାର ଉଶ୍ୱାସ ଏହି ଯୁଗରେ ହେବ ।
ପ୍ରବଳ ସଂଗ୍ରାମ ଲାଗିବ ପାପୀ ଥାଏ ନୋହିବ ।୨୧।
ଫିଟିବ ପ୍ରଜାଙ୍କ କଷଣ ସୁବର୍ଣ୍ଣ ବୃଷ୍ଟି ହେବ ।
ଫେଡ଼ିକରି ଏବେ କହିଲି ହେତୁ କଥାରେ ଥିବ ।୨୨।
ବାରବାଟୀ କିଲ୍ଲା ଭିତରେ ଘୋର ଯୁଦ୍ଧ ଲାଗିବ ।
ବାଇଶି ପାବଚ୍ଛ ଉପରେ ରକ୍ତ ଧାର ବହିବ ।୨୩।
ଭକତ ଜନ ମହାନନ୍ଦେ ହେଉଥିବେ ସନ୍ତୋଷ ।
ଭଣିଲେ ଅଚ୍ୟୁତ ଗୀତରେ ହେଜି ଶ୍ରୀହରି ରସ ।୨୪।
ମହୀ ମହାଗୋଳ ଚହଳ ପଡ଼ିବ ଠାବେ ଠାବେ ।
ମୁକୁନ୍ଦ ଦେବଙ୍କ ଅଙ୍କରେ ସୈନ୍ୟ ମାଡ଼ି ଆସିବେ ।୨୫।
ଯାଉଁଳି ବନ୍ଧର ଉପରେ ଘୋର ଯୁଦ୍ଧ ଲାଗିବ ।
ଯମ ମାଆ ସାତ ଭଉଣୀ ବାଟ ଜଗିଣ ଥିବ ।୨୬।
ରାଜାମାନେ ବହୁ ଅନ୍ୟାୟ କର୍ମ ଆଚରୁଥିବେ ।
ରହସ୍ୟ କଥାରେ ମଜ୍ଜିଣ ସର୍ବେ ଭୋଳ ହୋଇବେ ।୨୭।
ଲକ୍ଷ ଲକ୍ଷ ନାଶ ହୋଇବେ ଦେବୀ ରଡ଼ି ଘାତରେ ।
ନକ୍ଷତ୍ର ମାନ ଯେ ଖସିବେ ପୃଥୀ ଆତଯାତରେ ।୨୮।

ବାସୁକୀ ଭାରା ଯେ ଉଶ୍ୱାସ ସେହି ଯୁଗରେ ହେବ ।
ବଡ଼ ବଡ଼ ଜନମାନଙ୍କୁ ଭଗବତୀ ବାଛିବ ।୨୯।
ସତ ଶାନ୍ତି ଦୟା କ୍ଷମାକୁ ନିରନ୍ତରେ ପାଇବ ।
ସହଜେ ଅଜପା ଭଜନଗୁରୁ ଠାବୁଁ ଲଭିବ ।୩୦।
ସାତ ଦିନ ରାତ୍ର ଘୋଟିବ ଘୋର ସମର ହେବ ।
ସାହୁକୁ ଖାତେକ ନ ଶୁଝି ମିଥ୍ୟା କଥା ଭାଷିବ ।୩୧।
ସ୍ୱରୂପ କଥାକୁ କହିଲେ ଲୋକେ ହାସ୍ୟ କରିବେ ।
କ୍ଷଣ୍ଡ ପ୍ରାୟେ ଖୁରି ଖାଇଣ ମନ ଦମ୍ଭରେ ଥିବେ ।୩୨।
ହରିବୋଲ ଧ୍ୱନି ଶବଦେ ତିନିପୁର କମ୍ପିବ ।
ହରି ଆଶ୍ରା କଲା ଜନକୁ କାଳ ଦୃଷ୍ଟି ନୋହିବ ।୩୩।
କ୍ଷମାକର ଦୋଷ ମୋହର ପ୍ରଭୁ ଦୁଃଖୀ ସୋଦର ।
କ୍ଷମେ ଅଚ୍ୟୁତ ଦାସ କହେ ଦୁଷ୍ଟମାନଙ୍କୁ ଡର ।୩୪।



## ଭକ୍ତି ଚଉତିଶା

କମଳ ଆସନ ମଣ୍ଡୋଳ ଶେଷ ଦିଗ ଦକ୍ଷିଣ ।
କ୍ଷୀର ନଦୀ ତଳେ ପ୍ରଧାନ ଗ୍ରାମ ନେମାଳ ସ୍ଥାନ ।୧।
ଗିରିଜା ନାମେ ଜାଗୁଳାଇ ଉତ୍ତର କେଣେ ହେଜ ।
ଘୋଷଇ ମଧ୍ୟରେ ରହିଣ ପଶ୍ଚିମେ ଦେବରାଜ ।୨।
ଉଦୟ ଗିରି ବଟ ଦେଖେ ଯହିଁ ଗୁପତ ଲୀଳା ।
ଚିହ୍ନି ନ ପାରନ୍ତି ପ୍ରାଣୀୟେ ପ୍ରଭୁ ମାୟାରେ ଭୋଳା ।୩।
ଛବିଶରେ ଆଶା ଲଗାଇ ଚଉବିଂଶରେ ମନ ।
ଜଗତ ସୋଦର ଗୋସାଇଁ ପରା ଦେବେ ଦର୍ଶନ ।୪।
ଝରୁଅଛି କ୍ଷୀର ଧାରରୁ ନୀର ପ୍ରାୟ ଆକାର ।
ନିକେତନ କେତେନ ରକ୍ଷା କରିବେ ନୀଳାମ୍ବର ।୫।

ଟାହି ଟାପରାଙ୍କୁ ଯେଡ଼ିଣ ଅତି ଦୁଃଖରେ ମଜି ।
ଠାକୁର ଠାବ ଠା ଠିକରେ ଗିରିକନ୍ଦରେ ହେଜି ।୬।
ଡକା ପଡ଼ିବ ଘରେ ଘରେ ଥରେ ଅବଶ୍ୟ ରାମ ।
ଢାଙ୍କୁଣି ଫେଇବ ସମାଳି ମେଳ ଗୋପାଳ ଗଣ ।୭।
ଅଣହେତୁରେ ପୂର୍ବ ହୁଙ୍କା ବାବୁ ହୋଇବେ ପୂଜା ।
ତହିଁକି ପାହାରି ହୋଇଣ ଅହି କରେ ତରିଜା ।୮।
ସ୍ଥାନେ ସ୍ଥାନେ ଗିରିକୋଟରେ ଅଛି ଅବ୍ୟୟ ଧନ ।
ଦାନୀ ପୁରୁଷ ସେ ଧିଆନେ ହ୍ରୀଂ କ୍ରୀଂ ରୂପେ ଗୋପ୍ୟାନ ।୯।
ଧବଳ ନେତ ବନ୍ଧା ରାମ ଗିରି ଶିଖ ମାର୍ଗରେ ।
ନିରେଖିଣ ଅଛି ଅଧମ ତିନି ମହେଡ଼ା ଠାରେ ।୧୦।
ପାଟଣା ଉତ୍ତର ଭାଗରେ ଯହିଁ ଭକତ ରୁଣ୍ଡ ।
ଫନ୍ଦା ବୁଦ୍ଧି ମୋ ସେହି ଠାବେ ବନ୍ଧା ଅତି ପ୍ରଚଣ୍ଡ ।୧୧।
ବାଇ ପ୍ରାୟ ମନ ମୋହର ହୋଯେ ସ୍ମରିଣ ଏହା ।
ଭଣ୍ଡୁଆ ବୋଲିଣ ବୋଲନ୍ତି ଜଗତ ଜଗୁ ନାହା ।୧୨।
ମାୟାରେ ପଡ଼ିଅଛି ମୁହିଁ ନିରେଖ ହୁଁ ନିରେଖ ।
ଜଗତ ସୋଦର ଗୋସାଇଁ ସତେ ଫେଡ଼ିବେ ଦୁଃଖ ।୧୩।
ରଖ ବା ନ ରଖ ପ୍ରଭୁ ହେ ମୁଁ ଯେ ଗଲି ଶରଣ ।
ଲୟ କରିଛି ଏକାଦଶୀ ତିଥି ଯୋଗ କରଣ ।୧୪।
ବାର ସୁତ ଗୋପାଳ ମୋର ସତେ ହୋଇବ ମେଳ ।
ସମଲପୁର ନାରଖାର ହୋଇବ ଯେ ସୁନ୍ଦର ।୧୫।
ସେହି ଭରସା ମୁଁ କରିଣ ସର୍ବ ଆଶା ତେଜିଛି ।
ଶାଳବନୁଁ ରୂପ ବାହାର ହେବ ବୋଲି ପାଞ୍ଚିଛି ।୧୬।
ହରାଇଲା ଧନ ରଙ୍କକୁ ସତେ ହେବ ପ୍ରାପତ ।
ଛାର ଅଧମ ମୁଁ ଅଚ୍ୟୁତ ଏହି ଭାବର ଭୃତ୍ୟ ।୧୭।



## ମନଭେଦ ଚଉତିଶା

ମନ ଭେଳା ବାନ୍ଧ ସାଧୁ ସଙ୍ଗ କରରେ ଭଜ ହରି ।୦।

କହଇ ଯେ ଚଇତନ ସୁମନ ମୋ ବୋଲ ଶୁଣ
ଖୀନ ନାଢେ କରି ଧ୍ୟାନ ଗୁରୁଙ୍କ ଗୁପତ ଜ୍ଞାନ
ଘଟେ ଘଟେ ଛନ୍ତି ବିଜେ କରି ହୋ... ।୧।

ଓଲଟି ରହିଛି ମୂଳ ଓଁକାର ଉପରେ ଠୂଳ
ଚିନ୍ତାମଣି ଚିନ୍ତାକର ଛନ୍ଦ ବୁଦ୍ଧି ଛାଡ଼ ତୋର
ଯିବୁ ଦିନେ ଦେହ ଛାଡ଼ିକରି ହୋ...।୨।

ଝର ପଶ୍ଚିମକୁ ଚାହାଁ ଝଲକ ଦିଶୁଛି ଯାହା
ନୟନ ଆଗକୁ ଚାହାଁ ଟାକିଲେ ପାଇବୁ ତାହା
ଠାବେ ଠାବେ ଠୂଳ ରୂପ ଧରି ହୋ... ।୩।

ଡାକୁଚି ଡେରି ଶ୍ରବଣ ଡର ଭୟ ତେଜ ମନ
ଢାଳୁଣୀ ଫିଟୁ ବହନ ଆଶ୍ରେ ଶ୍ରୀଗୁରୁ ଚରଣ
ତରକି ଥା ନ ମର ତୁ ଝୁରି ହୋ... ।୪।

ଥୟ କର ପଞ୍ଚ ମନ ଥକିତ ହେଉ ପବନ
ଦେବେ ଥରେ ଦରଶନ ଦୃଷ୍ଟି ପରେ ଦେଇ ମନ
ଧ୍ୱନି ଧରି ଧ୍ୟାନ ନୀଳଗିରି ହୋ... ।୫।

ପର ରଜ ଶଶ ବଦ ପାଇ ଧ୍ରୁବ ପ୍ରହଲାଦ
ଫନ୍ଦା କଲେ ପଦ୍ମପାଦ ବିନ୍ଦୁ ମଧ୍ୟେ ପରପଦ
ଭକ୍ତ ଜନ ଉଦ୍ଧାରଣ କରି ହୋ... ।୬।

ମାୟା ସଂସାରରେ ପଡ଼ି ମରୁଅଛୁ କିମ୍ପା ବୁଡ଼ି
ଜଞ୍ଜାଳ ଜାଲକୁ ଏଡ଼ି ରହ ତୁ ହରଷେ ବୁଡ଼ି
ଲିପି ମନେ କିଶୋର କିଶୋରୀ ହେ... ।୭।

ବାରଣ ଭୂମିକି ଚାହିଁ ବାରେ ନ ଭକ୍ଟୁ କିମ୍ପାଇଁ
ସସ୍ତ୍ର ଦଳ ପରେ ରହି ଶାନ୍ତି ଭଜନେ ମନାଇ
ଶିଶୁବେଦ ପରେ ବିଜେ କରି ହୋ... ।୮।
ହଂସ ଚରଣକୁ ଧ୍ୟାନ ହେଜି ବୁଝରେ ସୁମନ
କ୍ଷମ ପାମର ଅଚ୍ୟୁତ କ୍ଷମାସିନ୍ଧୁ ପାଦେ ଚିତ୍ତ
କ୍ଷଣକେ ବିପଦୁଁ ଯିବୁ ତରି ହୋ... ।୯।



## ରାଧା ଦୂତୀ ଚଉତିଶା

କର ଧରି ରାଧା ଦୂତୀର ପୁଣି
କୋମଳ କରି କହୁଛନ୍ତି ବାଣୀ ।
କର ଗୋ ଦୂତୀ ତୁହି ତୋତେ ଧ୍ୟାନ ।
କମଳ ମଧ୍ୟରେ ନନ୍ଦନନ୍ଦନ ସେ
କରିବା ଚାଲ ଦର୍ଶନ ଗୋ ।
କାଳିନ୍ଦୀ କୂଳରେ କଦମ୍ବ ମୂଳରେ
କଳାକାହ୍ନୁ ନିରଞ୍ଜନ ଗୋ ।୧।
ଖଟୁଛନ୍ତି ଅଷ୍ଟସଖୀ ପାଶରେ
ଖେଳ କଉତୁକ ରଙ୍ଗରସରେ ।
ଖନୀ ନାଳ ପରେ ତାଙ୍କ ଆଶ୍ରମ ।
ଖେଦାଅ ସଖୀ ତୁ ମନ ପବନ
ଖଟିବା ସେ ଶ୍ରୀପୟରେ ଗୋ ।
ଖୋଜୁଛନ୍ତି ଯାକୁ ଯୋଗଧ୍ୟାନେ ମୁନି
ସେ ଛନ୍ତି ଆମ ହୃଦରେ ଗୋ ।୨।
ଗଡ଼ କରିଛି ଗିରି ପଶ୍ଚିମରେ
ଗଙ୍ଗା ଯମୁନା ସରସ୍ୱତୀ ପରେ ।
ଗୋଲକ ବୈକୁଣ୍ଠ ସେହି ଭୁବନ ।

ଗଳାଅ ସଖୀ ତୋ ମନ ପବନ
ଗୁମ୍ଫାରେ ଛନ୍ତି ଶ୍ରୀହରି ଗୋ ।
ଗର୍ଜନ କରୁଛି ଅହି ସେ ଠାବରେ
ନ ଆସିବୁ ତୁହି ଫେରି ଗୋ ।୩।
ଘର ଭିତରକୁ ପେଲିଣ ପଶ
ଘନଶ୍ୟାମ ଠାରେ ରଖ୍ ତୋ ଆଶ ।
ଘନ ଗର୍ଜନକୁ ନ ଡର ସହୀ ।
ଘୋଷ ହୃଦେ ଗୁରୁନାମକୁ ତୁହି
ଘୁଞ୍ଚି ନ ଆସିବୁ କ୍ଷଣେ ଗୋ ।
ଘର ଭିତରକୁ ରଖାଇଣ ଥିଲେ
କି କରିବେ ବିଘ୍ନଗଣେ ଗୋ ।୪।
ଓଲଟି ମୂଳ କମଳକୁ ଚାହାଁ
ଓଲଟ ପବନ ଉଜାଣି ବାଆ ।
ଓଁକାର ଉପରକୁ ଲୟକର ।
ଉଦୟେ ହୋଇଛନ୍ତି ତଥିପର ଯେ
ଅନୁଭବ ଦ୍ୱାର ଦ୍ୱାର ଗୋ ।
ଓଲଟ ପବନ ଅଣ ସାଧନାରେ
ବନ୍ଧ ପକାଇଣ ଗଳ ଗୋ ।୫।
ଚାହିଁ ସଖୀ ତୋର ହୃଦକୁ ତୁହି
ଚିଉକୁ ନାସା ଠିକ ପରେ ଥୋଇ ।
ଚନ୍ଦ୍ର ସୂର୍ଯ୍ୟ ସମ କିରଣ ରଖ ।
ଚାହିଁ ବସିଥାଅ ପଶ୍ଚିମ ଦେଶ ସେ
ଚକ୍ଷୁରୁ ନ ଝରୁ ବାରି ଗୋ ।

ଚଞ୍ଚଳ ଚିତ୍ତକୁ ସ୍ଥିର କରିଥିଲେ
ତେବେ ତାଙ୍କୁ ଠାବ କରି ଗୋ ।୬।
ଛାଡ଼ ସଖୀ ତୋର ସକଳ ଆଶା
ଛଡ଼ଚକ୍ର ପରେ କର ଭରସା ।
ଛାଇ ହାଇ ଦୁହିଁକୁ ଯାଅ ଖାଇ ।
ଛାମୁ ସେବାରେ ତୁହି ଥାଅ ରହି ସେ
କ୍ଷଣେ ନ ଛାଡ଼ିଣ ସ୍ଥାନ ଗୋ ।
ଛଣେ ପଶି ଦେଖି ଫେରି ଆସୁଥିଲେ
କି କରିବ ଜନ୍ତୁରାଣ ଗୋ ।୭।
ଜଞ୍ଜାଳ ଜାଲ ନୟନରୁ କାଟ
ଜାଗିଲେ ପାଇବୁ ପରମ ଭେଟ ।
ଯିବାକୁ ନିକଟ ବନ୍ଧୁ ଦୁର୍ଗମ ।
ଜାଗ୍ରତରେ ରହି କର ଦର୍ଶନ ସେ
ଯମୁନା ତଟରେ ଥାଇଁ ଗୋ ।
ଜଗତର ବନ୍ଧୁ ଅରୂପେ ଅଛନ୍ତି
ଚାହିଁଲେ ରୂପ ଦିଶଇ ଗୋ ।୮।
ଝାଡ଼ ଗିରି ପଶ୍ଚିମରେ ତୁ ପଶ
ଝାଡ଼ି ଯନ୍ତ୍ର ପେଲିଦେଇ ତୁ ପଶ ।
ଝଗଡ଼େ କେ ଅବା ରହିବ ସହୀ ।
ଝାଡ଼ିଦିଅ ସଖୀ ନାମକୁ ଧ୍ୟାୟୀ
ଝିଙ୍ଗାସ କରି ଭୃସ୍ଥାନେ ଗୋ ।
ଝଲମଲ ନୟନରେ ଆନ ଦିଶେ
ତାକୁ ଧର ତହିଁ ଧ୍ୟାନେ ଗୋ ।୯।

ନିର୍ଦ୍ଦୟା ନିଷ୍ଠୁର ପରମ ମୂର୍ତ୍ତି
ନିରେଖି ଚାହିଁଲେ ଦିଶେ ତୋ ଜ୍ୟୋତି ।
ନୟନ ନ ଟଳ ନ ଭ୍ରମି ତୁହି ।
ନିଶ୍ଚେ ତାଙ୍କ ପାଶେ ଆସି ମିଳଇ ସେ
ନିଷ୍ଠୁର ହୃଦୟ ଛାଡ଼ି ଗୋ ।
ନେଇ ସୁଧାପାନ ତାହାଙ୍କୁ କରାଇ
ଥାଇ ତାହା ଭାବେ ବୁଡ଼ି ଗୋ ।୧୦।
ଟେକ ସଖୀ ମନ ପବନ ତୁହି
ଟାକି ବସ ଅନାହତକୁ ଧାୟୀ ।
ଟଳିବ ନାହିଁ ଯେପରି ମିତଣୀ
ଟାଣେ ହୃଦେ ଗଣ୍ଠି ଦିଅ ତୁ ପୁଣି ସେ
ଟେକି ପୁତ୍ର ଦ୍ୱାରେ ବାର ଗୋ ।
ଟାଣ ଛାଡ଼ି ଦୂତୀ କାଳିନ୍ଦୀକୁ ଝାସି
ଭେଟିଲେ ମୁରଲୀଧର ଗୋ ।୧୧।
ଠାକୁରାଣୀଙ୍କ ସଙ୍ଗେ ଦୂତୀ ଥାଇ
ଠାକୁର ପୂର୍ଣ୍ଣାନନ୍ଦଙ୍କୁ ଭେଟଇ ।
ଠାବ କରି ତହିଁ ନ ଆସେ ଫେରି ।
ଠୂଳ ଶୂନ୍ୟକୁ ରହିଲା ଆବୋରି ସେ
ଠିକଣା ପାଇଣ ଦୂତୀ ଗୋ ।
ଠକ ଅରକ୍ଷ ଅଚ୍ୟୁତାନନ୍ଦ ଚିତ୍ତେ
ଭାବେ ଶ୍ରୀମତୀ ଶ୍ରୀପତି ଗୋ ।୧୨।
ଡାକନ୍ତି ରାଧା ଦୂତୀକି ଯେ ତହିଁ
ତୋଳେ ଦେଖିଯିବା ଗୋ ପ୍ରାଣସହୀ ।
ଡିମ୍ବ ଛୁଆକୁ ଧରି ଗମ ତୁହି ।

ତୋରେ ବ୍ରହ୍ମ ଗଣ୍ଠି ଦେଲେ ନପାଇ ସେ
ତାକି ବୁଝ ପ୍ରାଣସହୀ ଗୋ ।
ଡରେ ଥରହର ହୋଇଣ ଦୂତିକା
ଜୀବ ପରମେ ଖୋଜଇ ଗୋ ।୧୩।
ଢଳ ଢଳ ରୂପ ଆଜ ମିତଣୀ
ଢାଙ୍କୁଣୀ କାଢ଼ି ଦେଖାଇଲା ପୁଣି ।
ଢୋଳାଇ ଥିଲି ହେତୁ ନ ଥିଲା ସେ ।
ଢିରାହୋଇ ବ୍ରହ୍ମକୁ ଦେଖାଇଲା ସେ
ତମେ ମୋର ନାହିଁ ଇଚ୍ଛା ଗୋ ।
ଢଳି ନାଚୁଛନ୍ତି ପରମ ମୂରତି
ଦେଖିବାକୁ ମୋର ବାଞ୍ଛା ଗୋ ।୧୪।
ଅନନ୍ତ ରୂପ ଦେଖାଇଲା ନେଇ
ଆଉ ତା' ବିନୁଁ ନ ରୁଚଇ କେହି ।
ଅଭୟ ପାଦେ ଚିତ୍ତ ବୁଡ଼ି ରହେ ସେ ।
ଆବର ଆଜ୍ଞା ଅଭୟ ମାଗୁଅଛି
ଅପୂର୍ବ ମୂରତି ହରି ଗୋ ।
ଆଶା ଭରସା ତା' ବିନୁ କେହି ନାହିଁ
କରିବେ ସେ ଭବୁ ପାରି ଗୋ ।୧୫।
ତ୍ରିବେଣୀରେ ଝାସ ଦେଲି ମୁଁ ଯାଇ
ତଳେ କରି ମୋତେ ପାଇଲି ମୁହିଁ ।
ସ୍ତିରୀ ପୁରୁଷ ବେନି ଜନ ତୁହି ।
ତହିଁ ବୁଝିଲି ଏକ ରୂପ ସେଇ ସେ
ତୃଷ୍ଣ ଲାଗି ଭେଟିଲଇଁ ଗୋ ।

ତାଙ୍କୁ ଦେଖିବାର ବେଳେ ଗୋ ସଙ୍ଗାତ
ତରକିଲା ମୋର ଦେହୀ ଗୋ ।୧୬।
ସ୍ଥାପନା କରି ଯେ ଯନ୍ତ୍ରକୁ ମୁହିଁ
ସ୍ଥାନେ ସ୍ଥାନେ ମନ୍ତ୍ରମାନ ବସାଇ ।
ସ୍ଥିରକରି ଚିତ୍ତ ଥୋଇଲି ତହିଁ ।
ସ୍ଥାନ ଶୂନ୍ୟକୁ ଯନ୍ତ୍ର ନ ଗମଇ
ସ୍ତକିତ ହୋଇଲି ମୁହିଁ ଗୋ ।
ସ୍ଥାନେ ଥାଇଁ ବ୍ରହ୍ମଜ୍ୟୋତି ଡାକ ଦେଲେ
ଲେଖା ଯନ୍ତ୍ରେ ନାହିଁ ସେହି ଗୋ ।୧୭।
ଦେଖ ଯେ ଦେଉଳେ ଦେବତା ନାହିଁ
ଦେହକୁ ମଣୁ ମିଥ୍ୟା ଅନା ସହୀ ।
ଦେଖନ୍ତେ ଗୁରୁ ଆଦ୍ୟ ମତେ ନେଇ ।
ଦିହୁଡ଼ି ହୃଳ ମଧ୍ୟେ ଗୁପ୍ତେ ସେହି ଗୋ
ଦୀପ ଜୀବନେ ଲିଭଇ ଗୋ ।
ଦେହକୁ ନ ଭେଦି ଚଳେ ଯନ୍ତ୍ର ଥାପି
ବୁଝିଲା ଜନେ ନ ପାଇ ଗୋ ।୧୮।
ଧଇଲି ସେ ଶୂନ୍ୟ ମନକୁ ମୁହିଁ
ଧ୍ୟାନ କଲି ସୂର୍ଯ୍ୟ ମଣ୍ଡଳେ ଚାହିଁ ।
ଧୀରେ ଧୀରେ ମତ୍ତଗଜ ଚାଲିଲି ।
ଧ୍ରୁବ ମଣ୍ଡଳେ ବିଷ୍ଣୁଙ୍କୁ ଭେଟିଲି ସେ
ଧଇର୍ଯ୍ୟ ବୁଡ଼ିଲା ସହ ଗୋ ।
ଧରିବାକୁ ମନବାଞ୍ଛା କରୁଥିଲି
ସାହାସ ପାଇଲା ନାହିଁ ଗୋ ।୧୯।

ନିର୍ଭୟ ତହୁଁ ହୋଇଗଲି ମୁହିଁ
ନୀଳାଦ୍ରୀ ସିଂହ ଭୁବନ ଦେଖଇ ।
ନୃସିଂହ ରୂପ ଧରିଛନ୍ତି ତହିଁ ।
ନାହିଁ ତା' ପରି ମହାବଳୀ କେହି ଯେ
ନବ ଯୁବା ସେ ଶ୍ରୀହରି ଗୋ ।
ନବ ଅବଳା ଆଉ କେହି ଦେଖିଲେ
ନ ପାରିବେ ଦେହ ଧରି ଗୋ ।୨୦।
ପଶିବାକୁ ବଡ଼ ସଙ୍କଟ ତହିଁ
ପଶି ମିଶିଲେ ଭୟ କିଛି ନାହିଁ ।
ପୂର୍ବ କର୍ମର ଯାହା ଭାଗ୍ୟ ଥାଇ ।
ପରମ ଶୂନ୍ୟକୁ ସେହୁ ଭେଟଇ ଯେ
ପାଇ ଗୁପ୍ତେ ରଖିଥାଇ ଗୋ ।
ପଢ଼ିବା ଶୁଣିବା ବୁଝାଇବା ଜନେ
ଯାହା ନାହାନ୍ତି ସେ ଭୂଇଁ ଗୋ ।୨୧।
ଫଣା ଟେକି ଅହି ବୁଲୁଛି ତହିଁ
ଫେଡ଼ିଣ ଗ୍ଲାନି ଗଲି ପଶ ତୁହି ।
ଫୁଲ ମୃଣାଳରେ ମୁଁ ଘେନିଲଇଁ ।
ଫଣୀଧର ଶିବ ଦୟା କରିଣ ଯେ
ଫାଙ୍କ ଦେବେ ଠିକେ କହି ଗୋ ।
ଫଣା ତଳେ ମୋତେ ଗଳାଇଣ ଦେଲେ
ଭେଟିବି କଳା କହ୍ନାଇ ଗୋ ।୨୨।
ବୋଧନ୍ତି ରାଧା ଦୂତୀକୁ ଯେ ଚାହିଁ
ବିସ୍ତାର ନ କରି ରଖ ଘୋଡ଼ାଇ ।
ବ୍ରହ୍ମା ବିଷ୍ଣୁ ଶିବ ଅଛନ୍ତି ଯହିଁ ।

ବାରମ୍ବାର ନିତ୍ୟେ ଦେଖ ତୁ ଯାଇ ସେ
ବଟମୂଳେ ହିଙ୍ଗୁଳାଈ ଗୋ ।
ବାରି ଧରିଥିଲେ ସଖୀ ଚାରିଦ୍ୱାରେ
ଅଟକ ନୋହିବୁ କାହିଁ ଗୋ ।୨୩।
ଭଗାରି ତୋ ଭୁଲା ମନ ଗୋ ସହି
ଭାଙ୍ଗି ତାକୁ ଅନା ମରମେ ତୁହି ।
ଭକ୍ତିରେ ଯେ ଜନ ଭାବିଲେ ପାଇ ।
ଭାବେ ସମସ୍ତ ବଳେ ଉଦେ ହୋଇ ସେ
ଭ୍ରମି ନ ଯାଆ ତୁ କାହିଁ ଗୋ ।
ଭାବ ରଙ୍ଗ ମୂଢ଼ ଅଚ୍ୟୁତି ଭେଟିଲେ
କାୟା ମଧ୍ୟେ ଥିଲେ ରହି ଗୋ ।୨୪।
ମନ ଟି ବ୍ରହ୍ମ ହେତୁରେ ଅଛଇ
ମେଲା କଥାକୁ ନ ଜାଣନ୍ତି କେହି ।
ମାଟି ଭିତରେ ଯାର ଦୃଷ୍ଟି ଥାଇ ।
ମାଟିରେ ଚାରିଖାନିକୁ ଦେଖଇ ସେ
ମନ ସରୁ କର ତୁହି ଗୋ ।
ମାୟା ଜଞ୍ଜାଳ ତା'ଠାରେ ସମର୍ପିଲେ
ଅଲଗେ ତୁହି ତ ଯାଇ ଗୋ ।୨୫।
ଜପ ସଖୀ ସେହି ନାମକୁ ତହିଁ
ଜନ୍ମ ମରଣ ହେତୁ ମନ ଦେଇ ।
ଯତ୍ନେ ବୁଝ ଅଣସାଧନା ଏହି ।
ଯନ୍ତ୍ର ତୋ ଦେହ ସୂତ୍ରେ ଗଳ ତୁହି ସେ
ଜଗମୋହନ ଦିଶଇ ଗୋ ।

ଯନ୍ତ୍ରେ ମୋହନ ରୂପରେ ଦେଖା ପଥ
ଜାଣ ସୂତ୍ରେ ଛନ୍ତି ରହି ଗୋ ।୨୬।
ରାମ ନାମ ଯେଉଁ ସ୍ଥଳେ ଅଛଇ
ରବା ; ମୃଦଙ୍ଗ ବୀଣା ବାଜେ ତହିଁ ।
ରଷି ପଶ ସେହି ଧ୍ୱନିକୁ ଧାୟୀ
ରସିବା ଯୋଗସାଧନା ଅଟଇ ସେ ।
ରାହାସ ଭୂମିକୁ ଧାୟୀ ଗୋ ।
ରାଧାକୃଷ୍ଣ ପ୍ରେମ ଲମ୍ପଟ ଲୀଳାକୁ
ରହି ଦେଖୁଥାଅ ତୁହି ଗୋ ।୨୭।
ଲାବଣ୍ୟ ରୂପ ଅରୂପେ ଅଛଇ
ଲେଉଟାଇ ନେତ୍ର ଦେଖ ଗୋ ତୁହି ।
ଲାଖ ବିନ୍ଧ ନୀଳ ଫୁଲକୁ ଚାହିଁ
ଲେଉଟି ଥାସ ଶିକାରକୁ ପାଇ ସେ ।
ଲଭି ସୂତ୍ରେ ରହି ତୁହି ଗୋ ।
ଲଟକ ଝଟକ ନାନା ଭଙ୍ଗୀମାନ
ବ୍ୟର୍ଥ ଏଥି କିଛି ନାହିଁ ଗୋ ।୨୮।
ବହୁତ ଭ୍ରମଣି ତୀର୍ଥ ବ୍ରତେ ହିଁ
ବାହ୍ୟକୁ ଏସବୁ ରଙ୍ଗ ଅଟଇ ।
ବୁଝ ଏହି ସୂତ୍ର ଦେଉଛି କହି ।
ବକ ପ୍ରାୟ ବସି ମୀନକୁ ଚାହିଁଯେ
ବ୍ରହ୍ମ ମୀନ ସେ ଅଟଇ ଗୋ ।
ବାନ୍ଧି ଘେନିଥାଅ ବିଦ୍ୟାବାଦି ଅର୍ଥ
ମୀନକୁ ନ କହ ଫେଇ ଗୋ ।୨୯।

ଶ୍ରୀହରି ପାଟଣା ତୋ ଘର କହି
ଶ୍ରୀହରି ପରମ ସ୍ୱରୂପେ ତହିଁ ।
ଶ୍ରୀପାଦ ଅନୁଭବକୁ ଦିଶଇ ।
ଶ୍ରୀଭୂଜ ଟେକି ଶରଣ ମାଗଇ ସେ
ଶ୍ରୀଅଙ୍ଗେ ଲୀନ କରାଇ ଗୋ ।
ଶ୍ରୀଗୁରୁ ମାନେ ଏ ରୂପ ନ ଦେଖାଇ
ସାକ୍ଷୀ ଶବଦେ ଭୁଲାଇ ଗୋ ।୩୦।
ଶ୍ରବୁଛି ଶବଦ ଯେ ଦ୍ୱାରେ ସହୀ
ସ୍ଥିର ହୋଇ ଜଗି ବସ ଗୋ ତୁହି ।
ଶୂନ୍ୟ ଅଣସାଧନା ଯାକୁ କହି ।
ସାଧିଲେ ଏହି କିଛି ହିଁ ଦୂରେ ନାହିଁ ସେ
ସିଦ୍ଧ ଅଙ୍ଗ ହୁଅ ଧ୍ୟାୟୀ ଗୋ ।
ସାଧୁମାନେ ଶବଦକୁ ଭେଦିଣ
ନାଗାନ୍ତେ ଯୋଗାନ୍ତେ ରହି ଗୋ ।୩୧।
ସକଳ ଲୋହିତ ନୀଳ ପୀତ ହିଁ
ଶ୍ୱେତ ଯେ ସତ୍ୟ ସୁଶୀଳ ଅଟଇ ।
ସୁଧର୍ମ ସେହି ସଭାକୁ ତ କହି ।
ସୁଶାନ୍ତ ସୁଜନ ତହିଁଟି ଯାଇ ସେ
ଶୂନ୍ୟ ସମାଧି ଦେଖାଇ ଗୋ ।
ଶୂନ୍ୟ ଭୁବନେ ସନ୍ଥ ସାଧୁମାନେ
ଚିତ୍ତ ରଖ ନିତ୍ୟେ ନେଇ ଗୋ ।୩୨।
ହାଟ ଦଣ୍ଡିଆଳ ନେଇଣ ସହୀ
ହାଟ ବେଭାର ବୁଝ ତାକୁ ନେଇ ।

ହେଲି ଭଲ ମନ୍ଦ କହ ବୁଝାଇ
ହୃଦକମଳ ଖୋଲା କରିଦେଇ ସେ ।
ହରବର ନୋହ ତୁହି ଗୋ ।
ହୃଦୁଁ ବଡ଼ପଣ ତେଜିଣ ତୁ ପୁଣ
ଶରଣ ପଶ ତା' ଠାଇଁ ଗୋ ।୩୩।
ଖେଳ କର ନିତି ତା' ପାଶେ ଯାଇଁ
ଖେଳନ୍ତା ହଂସ ନେତ୍ରେ ବାନ୍ଧ ତୁହି ।
କ୍ଷଣେ ତୋର ଘଟୁ ଜୀବ ପଳାଇ ।
କ୍ଷଣିକ ତୋ ଦେହ ଚିର ନୁହଁଇ ସେ
ଖଟି ରହ ତାଙ୍କ ଠାଇଁ ଗୋ ।
ଖୋଜି ଖୋଜି ଦୀନ ଅଚ୍ୟୁତ ଭେଟିଲା
କ୍ଷୀରାର୍ଣ୍ଣବେ ଥିଲେ ଶୋଇ ଗୋ ।୩୪।



## ଶରୀରଭେଦ ଚଉତିଶା

କର କୃଷ୍ଣ ନାମ ଭଜନ କହୁଛି ଚଇତନ ।
ଖିତି ମଧ୍ୟେ ଖେଳ ଖେଳନ୍ତି ଅନାଦି ପୂର୍ଣ୍ଣବ୍ରହ୍ମ ।୧।
ଗଳି ଗଳି ମନ ଦେଖ ହୋ ଗୋଲାହାଟ ଉପର ।
ଘେରି ବସିଛନ୍ତି ଗୋପୀକା କୃଷ୍ଣଛନ୍ତି ମଧର ।୨।
ଉଦୟ ଭାନୁର ପରାୟେ ତାଙ୍କ ଦିଶଇ ଜ୍ୟୋତି ।
ଚିତ୍ତକୁ ନିଶ୍ଚଳେ ରଖିଲେ ଦେଖ ଦିବ୍ୟ ମୁରତି ।୩।
ଛନକା ନୁହଁ ତୁ ମନା ଛାଡି ଦମ୍ଭରେ ରହ ।
ଜଳ ପବନ ମଧରୁ ତାହାଙ୍କୁ ଆବୋରି ନିଅ ।୪।

ଝଳିଲା କାଞ୍ଚନ ପରାୟେ ଦିଶେ ସେ ଅଙ୍ଗ କାନ୍ତି ।
ନିର୍ମଳ ହୃଦୟ ହୋଇଲେ ଦୃଶ୍ୟ ହୋଇବ ଜ୍ୟୋତି ।୫।
ଟାଣ ତୁ ନ କର ମନ ହୋ ଟେକ ମନ ପବନ ।
ଠିକ କର ନେଇ ଶୂନ୍ୟରେ ଭେଟ ପରମ ବ୍ରହ୍ମ ।୬।
ଡକାଉଛି କାଳ ରହିଣ ଡଗରଙ୍କୁ ଜଣାଅ ।
ଢଳ ଢଳ ବେନି ନୟନ ପଶ୍ଚିମକୁ ଫେରାଅ ।୭।
ଅଣହେଳା କରି ବସନା ଅଣ ଆତ୍ମାକୁ ଚିହ୍ନ ।
ତ୍ରିପୁରାଙ୍କୁ ଲୟ ଲଗାଇ ତିନିପୁରକୁ ଜିଣି ।୮।
ଥୟ କରି ମନ ପବନ ଥାପ ଅନାହତରେ ।
ଦୃଶ୍ୟକୁ ନିଶ୍ଚଳେ ରଖିଲେ ଭେଟ ହେବ ସତ୍ୱରେ ।୯।
ଧରୁ ଧରୁ ବଣା କରୁଛି ତାଙ୍କୁ ଧରିଣ ଥିବୁ ।
ନୟନେ ପିତୁଳା ଦୁଇଙ୍କି କେଭେହେଁ ନ ଢାଙ୍କିବୁ ।୧୦।
ପରମାନନ୍ଦ ହିଁ ପୂରିଛି ଅପ୍ରତେ ତୁ ନକର ।
ଫୁଣ୍ଡାବନ ପରାୟେ ଯେ ତାହାଙ୍କୁ ତୋଳିଣ ଧର ।୧୧।
ବସିଥିବୁ ବଣା ନୋହିବୁ ବହୁ ବିଘ୍ନ ଆସଇ ।
ଭୟ ଛାଡ଼ି ହେଲେ ନିର୍ଭୟ ଆସି ପାଶେ ମିଳଇ ।୧୨।
ମତ୍ତ ଭଙ୍ଗୀ ପରି ଆପଣେ ଝୁଲି ଝୁଲି ଆସନ୍ତି ।
ଜଳ ପବନ ମଧ୍ୟରେ ରୂପ ପ୍ରକାଶ ହୁଅନ୍ତି ।୧୩।
ରଙ୍ଗ ଅଧରକୁ ଏଠାରେ କେବେ ଦେଖିଛ ମନ ।
ଲାବଣ୍ୟ ମୂରତି ହୁଅନ୍ତି ତାଙ୍କ ତେଜ ଘାତେଣ ।୧୪।
ବହିଗଲା ନଦୀ ପରାୟେ ବହି ଯାଉ ଅଛନ୍ତି ।
ଶ୍ରୀଚରଣ ଆଣ୍ଟେ ଧଇଲେ ଚକିତରେ ରହନ୍ତି ।୧୫।
ଶେଷ-ଅଙ୍ଗ କୃଷ୍ଣ-ଅଙ୍ଗ ଯେ ସେ ତ ଅଭେଦ ଦୁଇ
ଶୂନ୍ୟରୂପୀ ହୋଇଅଛନ୍ତି ତହୁଁ ରସ ଗଡ଼ଇ ।୧୬।

ହଜ ଯାଇ ମନ ସେ ରସେ ରସ ଆପ୍ୟାନ କର ।
ଛାର ଅଧମ ଅଚ୍ୟୁତକୁ ଭବ ସାଗରୁଁ ତାର ।୧୭।



## ସତର୍କ ଚଉତିଶା

କରରେ ମନ ଏବେ ହରି କୀର୍ତ୍ତନ
ଖଳ ଜନଙ୍କ ସଙ୍ଗ କର ବର୍ଜନରେ ।
ଗରବ ଛାଡ଼
ଘନଶ୍ୟାମକୁ ହୃଦେ ଧରିଥା ଦୃଢ଼ ।୧।
ନାହିଁ ଏ ଭାବେ ଶାନ୍ତି ଆନ କଥାରେ
ଚାହିଁ ଦେଖିଲେ ସବୁ ଦେହ ବୃଥାରେ ରେ
ଛାର ଯୌବନ
ଜଗତେ ନ ରହିବ ମାନ ଗୁମାନ ।୨।
ଝଟତି କର୍ମ କର ନ କର ଡେରି
ନିରତେ ଲଖି ହୁଏ ସଂପଦ ଶ୍ରୀରୀରେ ।
ଟାଣ ନ କର
ଠିକେ ଶ୍ରୀଗୁରୁ ନାମ ହୃଦେ ସୁମର ।୩।
ଡରିବା ବେଳ ଆସି ହେଲାଣି ତୋର
ଢାଳେ ଅଜ୍ଞାନ ହେଉ ପଶିବେ ଚୋରରେ ।
ନ ଥିବେ କେହି
ତରକି ଥିବୁ ତୋର ଭରସା ନେଇ ।୪।
ଥୟ ନୋହିବେ କେହି ଠିକ ବେଳକୁ
ଦେଖିବୁ ଜାଣି ରଖ ବେଳ କାଳକୁରେ ।
ଧ୍ୟାନ ଧାରଣା
ନିକଟେ ନେତ୍ର ଆଗେ ଧରିବୁ ସିନା ।୫।

ପଞ୍ଚ ମନକୁ ଏକ କରି ପାରିଲେ
ଫଳା ହରି ନାମରେ ନିତି କରିଲେ ରେ ।
ବଢ଼ିବ ଶକ୍ତି
ଭୟେ ତେଜିବୁ ମନୁଁ ଲଭିବୁ ଭକ୍ତି ।୬।
ମାୟା ମମତା ମୂଳ ବନ୍ଧନ ରଜ୍ଜୁ
ଜାଣି ଶୁଣି କିମ୍ପାଇଁ ତାହା ନ ହେଜୁ ରେ ।
ରମଣୀ ମଣି
ଲକ୍ଷ୍ୟ ରଖିଥା ସେହି କାଳ ନାଗୁଣୀ ।୭।
ବଳ ବୟସ ଶେଷେ କି ନଥିବ
ଶମନ ଘାରିଦେଲେ ସବୁ ସରିବ ରେ
ଷଡ଼ ଅଇରୀ
ସାରିଦେବ ଅଛନ୍ତି ସଙ୍ଗେ ତୋହରି ।୮।
ହଜାଇ ଦେଉ କିମ୍ପା ପାଇଲା ଧନ
କ୍ଷଣିକ ତାହା ପ୍ରତି କର ଯତନ ରେ ।
କ୍ଷମା ସାଗର
କ୍ଷମା ମାଗେ ଅଚ୍ୟୁତି ପାମର ଛାର ।୯।



## ସୁମରଣା ଚଉତିଶା

କରେ ଅଚ୍ୟୁତି ଭଜନ
କହୁଁ କହୁଁ କଳି ଗଲା ଘୋଟିଣ ଯେ
କଳାରୂପ ନାହିଁ ଦରଶନ । ସୁଜନେ ହେ ।୧।
ଖୀନ ଅଚ୍ୟୁତର ବଳ
ଖଳ ଗୋଳ ହେଲା ବେଳକୁ ବେଳ ଯେ
ଖଣ୍ଡେ ମାତି ହୋଇବେ ପ୍ରବଳ । ସୁଜନେ ହେ ।୨।

ଗୀତେ ଅଚ୍ୟୁତି ଭଣଇ
ଗୁପତେ ରହି ସେ ଲୀଳା କରଇ ଯେ
ଗଣ୍ଡିବେଳେ ପ୍ରକାଶିବି ମୁହିଁ । ସୁଜନେ ହେ ।୩।
ଘୋଷଇ ଅଚ୍ୟୁତି ଗୀତେ
ଘଟିଯିବ କଥା ଯେ ଗୋଟା କେତେ ଯେ
ଘୁମେ ନ ଚେତିବେ କେହି ଚିତ୍ତେ । ସୁଜନେ ହେ ।୪।
ଉତରେ ଅଚ୍ୟୁତି ଭଣି
ଊନବିଂଶ ନେତ୍ର ଅଙ୍କରୁ ଜାଣଯେ
ଉଇଁ ଆସିବେ ପୂର୍ବୁ ସଇନି । ସୁଜନେ ହେ ।୫।
ଚେତାଇ କହେ ଅଚ୍ୟୁତ
ଚାରି ଘନ ଋତୁ ଅଙ୍କରେ ଚେତ ଯେ
ଚେତା ଅବଶ୍ୟବୁଡ଼ି ଯିବ ତ । ସୁଜନେ ହେ ।୬।
ଛନ୍ଦେ ଅଚ୍ୟୁତି କହେ
ଛଇଳ ନୋହିର ଥାଅ ଚିତୋଇ ଯେ
ଛଞ୍ଚା ପୁଣ୍ୟ ଏକା ଥିବ ରହି । ସୁଜନେ ହେ ।୭।
ଜନ୍ମ ରାତ୍ର ତହୁଁ ହୁଏ
ଜାଣିଥାଅ ମୋହୋ ସକଳ ପୋଏ ଯେ
ଜନେ ନ ମରେ କରି ଉପାଏ । ସୁଜନେ ହେ ।୮।
ଝଗଡ଼େ ଅଚ୍ୟୁତି କଥା
ଝାଡ଼େ ପଶିବେ ସେ ସକଳ ପୋତା ଯେ
ଝୁରି କରୁଥିବେ ମୋହ ଚିନ୍ତା । ସୁଜନେ ହେ ।୯।
ନିଷ୍ଠା କହଇ ଅଚ୍ୟୁତ
ନବ ତିନି ଘନେ ପାଞ୍ଚ ମିଶା ତ
ନ ରହିବ ଦମନ ଭୋଗ ତ । ସୁଜନେ ହେ ।୧୦।

ଟେକ ଅଚ୍ୟୁତିର ବୋଲ
ଟଳିବ କି ପୃଥ୍ୱୀ ହେଲେ ଦି' ଫାଳ ଯେ
ଟାପରା ମଣିବେ ମୂଢ଼ ମେଳ । ସୁଜନେ ହେ ।୧୧।
ଠିକଣା ଅଚ୍ୟୁତ କଲେ
ଠିଅ ତିନି ବାମେ ପାଞ୍ଚ ଥାପିଲେ ଯେ
ଠକି ଯିବ ମୀନ ଶନି ଭଲେ । ସୁଜନେ ହେ ।୧୨।
ଡାକି କହଇ ଅଚ୍ୟୁତି
ଡାଙ୍କେଣୀ ଗୋଳ ଭିଆଇବେ କ୍ଷିତି ଯେ
ଡର ଘାଉଡ଼ ଟାଳିବ ମତି । ସୁଜନେ ହେ ।୧୩।
ଢମାଳି ଅଚ୍ୟୁତ ବାଇ
ଢାଳେ ଢାଳିବେ ହରବର ହୋଇ ଯେ
ତମ ବଢଲିଣ ନାଶ ଯାଇ । ସୁଜନେ ହେ ।୧୪।
ଅଚ୍ୟୁତି ଯୋଡ଼ଇ ଗୀତ
ଏକାକ୍ଷର ଜପା ଯେତେ ଭକତ ଯେ
ଅବଶ୍ୟ ଲୀଳା ଦେଖିବ ସେ ନେତ୍ର । ସୁଜନେ ହେ ।୧୫।
ତିଆରି ଅଚ୍ୟୁତି କହି
ତେଇଶରେ ଥୟ ରହିବ ନାହିଁଯେ
ତିନି ରଡ଼ି କେ ପାରିବ ସହି । ସୁଜନେ ହେ ।୧୬।
ଥିର ବାଣୀ ଅଚ୍ୟୁତିର
ଥିଲା ଅଥିଲାକୁ ସାମନ କର ଯେ
ଥିଲେ ମୋହିବା ବେଳ କାହାର । ସୁଜନେ ହେ ।୧୭।
ଦମ୍ଭେ ଭଣଇ ଅଚ୍ୟୁତି
ଦଧି ସାଗର ତୀରେ ଗିରି ଲୁଚି ଯେ
ଦୃଶ୍ୟଲୀଳା ହେବ ଉତୁପତ । ସୁଜନେ ହେ ।୧୮।

ଧୀର ବାଣୀ ଅଚ୍ୟୁତିର
ଧବଳ କେତନ ଗିରି ଉପର ଯେ
ଧରାଯିବ ସେଠାବେଣ ଚୋର । ସୁଜନେ ହେ ।୧୯।
ନିଷ୍ଠା ବାଣୀ ଅଚ୍ୟୁତର
ନେମାଳ ଲମ୍ବନ ଅତି ପ୍ରଖର ଯେ
ଲୀଳା ଆଦ୍ୟ ହେବ ସେହିଠାର । ସୁଜନେ ହେ ।୨୦।
ପାଞ୍ଚଇ ଅଚ୍ୟୁତ ମନେ
ପଳାଇବେ ଚୋର ପରି ଦମନେ ଯେ
ପୁଣ ପତିତ ସ୍ଥାପିତେ ସ୍ଥାନେ । ସୁଜନେ ହେ ।୨୧।
ଫାନ୍ଦିଣ ଭଣେ ଅଚ୍ୟୁତ
ଫନ୍ଦା ଅପ୍ରମିତ ବୁଡ଼ିଯିବ ତ ଯେ
ଫନ୍ଦା ଲାଭ ହେବ ଆଚମ୍ବିତ । ସୁଜନେ ହେ ।୨୨।
ବାଲୁତ ଅଚ୍ୟୁତ ବାଣୀ
ବଡ଼ ଜନ ଧରା ହୋଇବେ ପୁଣି ଯେ
ବିନାଶରେ ଶିର ହେବ ଗଣି । ସୁଜନେ ହେ ।୨୩।
ଭାବିଣ ଅଚ୍ୟୁତ କହି
ଭାବ ବିନୋଦିଆ ଭାବ ଲଗାଇ ଯେ
ଭୂପତି ବୋଲିବେ ରାଏ ଭାଇ । ସୁଜନେ ହେ ।୨୪।
ମନାସ ଅଚ୍ୟୁତିଙ୍କର
ମହୀରେ ପରଖ ହେବ ନିଜର ଯେ
ମନ ପୋଡ଼ିବ ମେଳିଆଙ୍କର । ସୁଜନେ ହେ ।୨୫।
ଯହିଁ କି ଅଚ୍ୟୁତ ବାଇ
ଯତନେ ଘଟଣ ହୋଇବ ସେହି ଯେ
ଯାଗି ରହିଥାଇଁ ତହିଁ ପାଇଁ । ସୁଜନେ ହେ ।୨୬।

ରହିଛି ଅଚ୍ୟୁତ ମନ
ରାତ୍ରି ଦିନ ଯୁଦ୍ଧ ଲାଗିବ ପୁଣି ଯେ
ରାଜପୁଏ ଖାଇବେଟି ହାଣ । ସୁଜନେ ହେ ।୨୭।
ଲଏ ଅଚ୍ୟୁତିର ଦକ
ଲୀଳା ଭିଆଇବେ ଜଗୁନାୟେକ ଯେ
ଲୁହ ଗଡ଼ାଉଥିବେ ମୁରୁଖ । ସୁଜନେ ହେ ।୨୮।
ବଢ଼ି ନ କହେ ଅଚ୍ୟୁତ
ବାଲିପାଟଣୁଁ ପାଇବ ସଙ୍କେତ ଯେ
ବାଇବ୍ୟରୁ ଆଜ୍ଞା ହୋଇବ ତ । ସୁଜନେ ହେ ।୨୯।
ସାର୍ଥ ଅଚ୍ୟୁତି ବୋଇଲେ
ସାର ପରମାଦ ଠିକଣା କଲେ ଯେ
ସନ ବିନା ଅଙ୍କରେ ରଖିଲେ । ସୁଜନେ ହେ ।୩୦।
ସତ୍ୟ ଭଣଇ ଅଚ୍ୟୁତ
ଶୁଣି ମଣିବେ ସତେଁ ସ୍ୱପ୍ନମତ ଯେ
ସେହି ହେଲେ ସିଧ ସନମତ । ସୁଜନେ ହେ ।୩୧।
ସଂକ୍ଷେପି ଅଚ୍ୟୁତି କହି
ଶନିବାର ଦିନ ଗୋପ୍ୟାନେ ରହି ଯେ
ସମୂଳେ ସର୍ବ ସିଧ ସାଧଇ । ସୁଜନେ ହେ ।୩୨।
ହରଷ ଅଚ୍ୟୁତି ହେଲା
ହରିବୋଲ କରତାଳି ମାଇଲ ଯେ
ହଜି ହଜାଣରେ ପଦ କଲା । ସୁଜନେ ହେ ।୩୩।
କ୍ଷମେ ବୋଲଇଁ ଅଚ୍ୟୁତ
କ୍ଷେମେ ଯୋଗକଲି ଯେହ୍ନୁ ଚରିତ ଯେ
ଛନ୍ଦେ ଆଦ୍ୟ ପାଦେ ନାମ ଖ୍ୟାତ । ସୁଜନେ ହେ ।୩୪।



## ପଞ୍ଚମ ପରିଚ୍ଛେଦ

**"ଶୋଇକି ରହିବ ଯିଏ, ତାକୁ ଉଠେଇବ କିଏ ?
ହଁରେ ବାପା ! ଭଲକି ଶୋଇ ରହିଥା । ମୁଁ ମୋ
କାମରେ ଯାଉଛି ।"**

ଏଇ କାବ୍ୟଟି ଥିଲା ଜନୈକ ମହାତ୍ମାଙ୍କର, ଅର୍ଥାତ୍ ଜଣେ ହିତାକାଂକ୍ଷୀ ଭବିଷ୍ୟତ ଦୃଶ୍ୟ ଦେଖିପାରୁଥିବା ବୃଦ୍ଧଙ୍କର । ଏଇ ଦି'ପଦ ଶୁଣେଇ ଚାଲିଗଲେ ଯୁବକଟିକୁ । କ'ଣ ମୁଁ ତ ଏହାର ଅର୍ଥ କିଛି ବୁଝିପାରିଲି ନାହିଁ, କ'ଣ ଏମିତି କହିଗଲେ ?

ଏଇ ରକମର ସେଇ ଯୁବକଟି ଖାଲି ଯାକୁ ତାକୁ ଯାହାକୁ ଦେଖିଲେ ପଚାରି ବସିଲେ । କେହି ତ କିଛି କହିପାରୁ ନ ଥାନ୍ତି । ଏତ ବଡ଼ ବଡୁଆ କଥା ହେଲା ? କ'ଣ କରିବି ?

ବୃଦ୍ଧଙ୍କର ଠାରରେ ସବୁ କଥା ଚାଲିଥାଏ । ଯାହାକୁ ଟିକେ ଭଲ ପାଆନ୍ତି, ତାକୁ ଏଇ ରକମରେ ପଦେ ପଦେ କହି ଦେଇ ନିଜ ବାଟରେ ଚାଲିଯାନ୍ତି । କାରଣ ସେ ସବୁ ଜାଣି ପାରୁଛନ୍ତି, କିଏ ରହିବ ଆଉ କିଏ ଯିବ ।

ସମୟ ଆସି ନିକଟ ହୋଇଗଲାଣି । କାହାରି ନିଦ ଭାଙ୍ଗୁ ନାହିଁ, ଶୋଇଛନ୍ତି । ଯେଉଁମାନେ ହିତାକାଂକ୍ଷୀ ସେମାନେ ସିନା ଦିନରୁ ଉଠେଇ ଦେବେ ? ଆଉ ଠକିବା ପାଇଁ, ଭଣ୍ଡେଇବା ପାଇଁ ହିତାକାଂକ୍ଷୀ ବନି ଯାଇଥିବା ଗୁରୁ ଗୁରୁଜୀ ଡାକ ଘେନୁଥିବା ମଣିଷ କାହିଁକି ବା ନିଦରୁ ଉଠେଇବ ? ତା'ର ତ ମତଲବ ଅଛି ପଇସା ପାଖରେ । ସେ ତ ଦିନରାତି ପଇସା ପଇସା କିପରି ରୋଜଗାର କରିବି, ଏଇ କଥା ପ୍ରତିଦିନ ରାତ୍ରିରେ ସ୍ୱପ୍ନ ଦେଖୁଛି । ତାକୁ କାହିଁକି ଜଣା ପଡ଼ିବଯେ, କ'ଣ ସବୁ ଆଗକୁ ହେବାକୁ ଯାଉଛି ? ସେ ତ ନିଜେ ଗାଢ଼ ନିଦ୍ରାରେ ଘୁଙ୍ଗୁଡ଼ି ମାରି

ଶୋଉଛି, ସିଏ ବା କାହିଁକି କାହାକୁ ଉଠେଇବ, ଯାହା ଜଣାପଡୁଛି, ସେ ସେଇ ରକମର ଶୋଇ ରହିଥିବ !

ଦୂମକେ ଦୂମକେ ଠାରରେ କଥାଟି ଏଇଠି ସରିଲା । ପୁଣି ପରେ ।



**"ଦ୍ୱାପରରେ ପ୍ରଭୁ ଆସିଥିଲେ । ଅଳ୍ପଦିନ ପରେ ସବୁ ସରିବ, ଏକଥାକୁ ନା ଜାଣିପାରିଥିଲେ କୌରବ ନା ପାଣ୍ଡବ ?"**

**—ବର୍ତ୍ତମାନ ଠିକ୍ ସେଇପରି ଲୀଳା ଚାଲଛି ।**

ଆଲୋ ମିତଣୀ ! ତୁ ଶୁଣିଲୁଣି କି ଏ ବାଣୀ ? ନାଇଁ ମ, କିଛି ତ ଶୁଣି ପାରୁନି । କାନ ପାଖକୁ ତ ଏକଥା ଆସୁନି । ଆଲୋ ହେ ! ତୋ କାନ ତ ମୋଟେ ଏ ସବୁ କଥାକୁ କ୍ୟାଚ୍ କରୁନି, ଅର୍ଥ (ଧରି ପାରୁନି) । ସେ ଟିକେ ଟିକେ ଇଂରାଜୀ କହି ପାରନ୍ତି, ଆଜିକାଲି ତ ଏଇମିତି ଷ୍ଟାଇଲ୍ ବାହାରିଛି ଓଡ଼ିଆରେ କଥାବାର୍ତ୍ତା ହେବାବେଳେ ମଝିରେ ମଝିରେ ଏଇମିତିଆ ପଦେ ପଦେ ଇଂରାଜୀ ପାଟିରୁ ବାହାରିପଡ଼େ ।

ଏଇମିତି ବସି, ପୋଖରୀ ତୁଠରେ ଦାନ୍ତ ଘଷୁ ଘଷୁ ନାନୀ ଦୁଇଟି କଥାବାର୍ତ୍ତା ପରସ୍ପରକୁ ବିନିମୟ କରୁଥାନ୍ତି । ଏ ଦୁହିଁଙ୍କ ଭିତରେ ଜଣେ ଦେବଅଂଶୀ ଓ ଅନ୍ୟ ଜଣଟି ଅସୁରଅଂଶୀ ଅର୍ଥାତ୍ ଆସୁରିକ କଳାରେ ଜନ୍ମ । ଦେବକଳାରେ ଜନ୍ମିତ ନାନୀଟି ରାତିରେ ଶୋଇଥିବାବେଳେ ଟିକେ ଟିକେ କ'ଣ ସ୍ୱପ୍ନରେ ଜାଣିପାରେ, ଆଉ ଆସୁରିକ କଳାରେ ଜନ୍ମଲାଭ କରିଥିବା ନାନୀଟି ଏପରି ଶୁଏ ଯେ, ରାତି ପାହି ସୂର୍ଯ୍ୟଦେବ ଉଦୟ ହେବାପରେ ଯାଇଁ ଉଠେ ।

ଦାନ୍ତଘଷା ସରିଲା । ତା'ପରେ ଗାଧୁଆ ପାଧୁଆ ବଢ଼େଇ ଦୁଇ ନାନୀ ବାହାରିଲେ ନିଜ ନିଜ ଗୃହକୁ । ସାନ ନାନୀକୁ, ବଡ଼ ନାନୀଟ

ନିମନ୍ତ୍ରଣ ଜଣେଇ କହିବାକୁ ଲାଗିଲେ—"ଆଜି ଆମ ଘରଆଡ଼େ ଆସ, ଟିକେ ବି ଦୁଃଖସୁଖ କଥା ହେବା । ମୁଁ ତ ଜମା କିଛି ଜାଣିପାରୁନି, କିପରି ଜାଣିବାକୁ ସକ୍ଷମ ହେବି, ମୋତେ ଟିକେ ଭଲ ଭାବେ ବତେଇ ଦେବ ।"

ତା'ପରେ ପୁଣି କହି ବସିଲେ—"ମୁଁ କ'ଣ କରିବି ? ମୋ ପୁଅ ମାନୁଛି ନା ମୋ ଝିଅ ମାନୁଛି, କେହି ତ କିଛି କାନରେ ପୁରୋଉ ନାହାନ୍ତି । ଆଉ ଆମ ବାବୁ ତ ସଦାବେଳେ ସେଇ ସିନେମା ବହି, ନଭେଲ୍ ବହି କିଣିକି ପଢ଼ନ୍ତି, କିଏ ସିନା ଘରକୁ ସେଇ ରକମର ମହାପୁରୁଷଙ୍କ ଲେଖା ବହି ଆଣିଲେ ମୁଁ ଟିକିଏ ପଢ଼ିବାକୁ ବା ଦେଖିବାକୁ ପାଆନ୍ତି ? ତୁମଠୁଁ ସବୁ ଶୁଣିଲା ପରେ ମୋ ମନଟା କାହିଁକି କେମିତିଆ କେମିତିଆ ଲାଗୁଛି । ତୁମକୁ ମୋ ରାଣ ରହିଲା, ନିଶ୍ଚୟ ଆଜି ମୋ ଘରକୁ ଆସିବ । ହଁ, ଆସିଲା ବେଳେ ସେଇ ମାଳିକା ବହି ଖଣ୍ଡିକ ହାତରେ ଧରି ଆସିବ ।"

—ଏଇ କଥାବାର୍ତ୍ତାଟି ପ୍ରଭୁ ଶ୍ରୀ କଳ୍କୀଙ୍କ କର୍ଣ୍ଣଗୋଚର ହୋଇଥିଲା । ଏସବୁ ଦୂରରେ ଥାଇଁ ଶୁଣିଥିଲେ ।



**ଭକ୍ତ ଶ୍ରୀ ତ୍ରୈଲୋକ୍ୟ ନାଥ ରାଉତ, ଜୟପୁର, ଜି-କୋରାପୁଟରେ ଥାଇ ବିନତୀ କରିଥିଲେ—**

"ଜୟ ଜୟ ଅନନ୍ତକେଶରୀ ଜୟ ହେ !
ସଦା ରୁହ ମନ ତୁମ୍ଭ ଚରଣରେ ବିତିଯାଉ ଏ ଜୀବନ ।
ତୁମ୍ଭ ଜୟଗାନ ଜପ ତ କରିବି ଏତିକି କରୁଣା କର ହେ
ପ୍ରଭୁ ଦୟା ସାଗର !
ସବୁଦିନ ପାଇଁ ତୁମ୍ଭରି ଆଶିଷ ବହିଯାଉ ଧରା ପରେ
ପ୍ରାଣୀ ଏ ଲଭନ୍ତୁ ସବୁତ ଶକତି ଏଇ ଧରା ବୁକୁରେ ।
ଦୁଷ୍ଟକୁ ନିବାରି ସନ୍ଥକୁ ଉଦ୍ଧାରି ରଖ ଏ ଭାରତ ଭୂଇଁ
ଯୁଗ ଯୁଗ ଧରି ରହିଯାଉ କୀର୍ତ୍ତି ଏଇ ଧରାଧାମେ ବହି ।"

ପୁଣି କହିଛନ୍ତି—''ପ୍ରଭୁ ! ଆପଣଙ୍କର ଏ ମାୟା, ଜଗତକୁ ଅଗୋଚର । ପ୍ରଭୁ ! ଏ କଳିଯୁଗରେ ମୋର କେତେ ଜନ୍ମ ଗଲାଣି, ତାହା ତ ମୋତେ ଜଣା ନାହିଁ ! କାରଣ ଚୈତନ୍ୟ ଶକ୍ତି ଜାଗରଣ ହେଉନାହିଁ; କିନ୍ତୁ ଏହି ଜନ୍ମରେ ପିଲାଦିନୁ ବାପାଙ୍କଠାରୁ କିଛି ଶୁଣିଥିଲେ ; କିନ୍ତୁ କାଳର କରାଳ ସ୍ରୋତରେ ବାପା ଚାଲିଗଲେ, ଏଣୁ ସବୁକିଛି ଅଧାରେ ରହିଗଲା । ଅନିଚ୍ଛା ସତ୍ତ୍ୱେ ସଂସାର ବନ୍ଧନରେ ବାନ୍ଧି ହୋଇଗଲି; କିନ୍ତୁ ଏହି ପରିସ୍ଥିତିରେ ପ୍ରଭୁ ! ଆପଣଙ୍କୁ ସବୁ ସମର୍ପଣ କରିଦେଲି । ଆପଣଙ୍କ ଚରଣ ତଳେ ଏ ସଂସାରକୁ ଅର୍ପଣ କରିଦେଲି । ସବୁ ଆପଣଙ୍କ ଇଚ୍ଛା, ଆପଣ ଯାହା କରିବେ ? ଆପଣ ତ ଅନ୍ତର୍ଯ୍ୟାମୀ, ସବୁ ଦେଖୁଛନ୍ତି, ଜାଣୁଛନ୍ତି ଶୁଣୁଛନ୍ତି । ପ୍ରଭୁ ! ଆପଣଙ୍କ ଦର୍ଶନ ପାଇଁ ମନଟା ଭାରି ବ୍ୟାକୁଳ, କିନ୍ତୁ କାହିଁକି ଯାଇପାରୁନି ଆପଣ ଜାଣିଛନ୍ତି । ପ୍ରଭୁ ! ଆପଣ କୃପା କଲେ ଏ ନେତ୍ର ଆପଣଙ୍କର ଏ ମାନବ ଶରୀର ଦେଖି ପବିତ୍ର ହେବ । ପ୍ରଭୁ ! କୃପା କରି ଆପଣ ଦର୍ଶନ ଦିଅନ୍ତୁ, ଆମେ ତ ଆପଣଙ୍କ କୃପା ଭିକାରୀ । ଆପଣଙ୍କୁ ଅନୁରୋଧ, ଏ ସଂସାରକୁ ଦୁର୍ନୀତିଗ୍ରସ୍ତ ଅତ୍ୟାଚାରୀଙ୍କ କବଳରୁ ମୁକ୍ତ କରାନ୍ତୁ । ଆପଣଙ୍କ କରୁଣା ସାଗରରୁ ବିନ୍ଦୁଏ ମାତ୍ର ଜଳ ମୋ ଉପରେ ପଡ଼ିଲେ ନିଶ୍ଚୟ ସାକ୍ଷାତ ମିଳିବ । ଇତି । ଆପଣଙ୍କ କୃପା କରୁଣାର ଭିକାରୀ ତ୍ରୈଲୋକ୍ୟ ।

ତର୍ଜମା—ଏହି ବିନତୀ ପ୍ରଭୁଙ୍କ ନିକଟରେ ପହଞ୍ଚି ଯାଇଥିଲା । ପ୍ରଭୁ ତ ନିଜେ ମାୟାଧର, ଦେବୀ ଯୋଗମାୟାଙ୍କୁ କହି ଦେଇଥାନ୍ତିଯେ— ''ମୋ ଭକ୍ତ ଯେଉଁଠି ଯେତେ ଦୂରରେ ଥାଉ ପଛେ ତା' ମନର ଭାବକୁ ମୋ ନିକଟକୁ ପ୍ରେରଣ କରିଦିଅ । ରାତ୍ରିରେ ସେମାନଙ୍କୁ ସ୍ୱପ୍ନାଦେଶ ମାଧମରେ କୁହ, ସତକୁ ସତ ତାହା ହିଁ ହେଉଛି ସବୁ କାର୍ଯ୍ୟକ୍ଷେତ୍ରରେ ଏବେ । ଧ୍ୟାନ କର ସବୁ ଜାଣି ପାରିବ ।

ହିତୋପଦେଶ—"ପ୍ରଭୁ ତ ଭାବରେ ବନ୍ଧା । ଯେ ଯେମିତି ଭାବ ଲଗେଇ ପାରିବ, ସେ ସେମିତି ବାନ୍ଧି ପାରିବ । ଅହଂଭାବ ମନକୁ ଆଣିଲେ ସବୁ ସରିଯିବ । ଭକ୍ତି, ସ୍ନେହ ଓ ପ୍ରେମ ଦେଇ ପାରିଲେ ଅସାଧ୍ୟ ସାଧନ ହୋଇପାରେ । ଅନ୍ଧକୁ ଦିଶେ ରାସ୍ତା ! ମୂର୍ଖ ହୁଏ ପଣ୍ଡିତ । ।ଅଜ୍ଞାନ ହୁଏ ଜ୍ଞାନୀ । ନିର୍ଦ୍ଧନ ହୁଏ ଧନୀ । ଅସୁନ୍ଦରୀ ହୁଏ ସୁନ୍ଦରୀ, ଯେପରି କୁବୁଜା ହୋଇଥିଲେ । ପାଷାଣ ରୂପରେ ପଡ଼ିଥିବା ଅହଲ୍ୟା ହୋଇଥିଲେ ଉଦ୍ଧାର । ମୁକତି ଲଭିଲେ, ଶାନ୍ତି ପାଇଲେ, ସୁଖ ପାଇଲେ ଏବଂ ଜୀବନ ଉଦ୍ଧାର ହୋଇଥିଲା ।"



**ଆହୁରି ଗୋଟିଏ କଥା :**

ପୁରୁଷ ଭକ୍ତ ହେଲେ ଗୋପାଳ, ଆଉ ନାରୀ ଭକ୍ତ ହେଲେ ଗୋପୀ । ପ୍ରଭୁଙ୍କ ପାଖରେ ଗୋପାଳମାନଙ୍କର ଯେପରି ଅଳି ଆପତ୍ତି ଚାଲିଛି, ସେଇପରି ମଧ୍ୟ ଗୋପୀଙ୍କର କେତେ ଯେ ହାରି ଗୁହାରୀ·ଶ୍ରଦ୍ଧା ଭକ୍ତି ନିବେଦନ ହେଉଛି ।

ବର୍ତ୍ତମାନ କଳିଙ୍କର (କଳିଦେବତାଙ୍କର) ଏଇଟି ଚାଲିଛି ଶାସନର ଶେଷ ସମୟ । ସ୍ଥାନେ ସ୍ଥାନେ ଥିବା ଭକ୍ତମାନଙ୍କ ସମ୍ବନ୍ଧରେ ଅର୍ଥାତ୍ ଗୋପାଳମାନଙ୍କ ସମ୍ବନ୍ଧେ ଏଇ ମାଳିକା ବହିରେ ଦି' ଦି' ପଦର ସୂଚନା ଦିଆଯାଇଛି, କିନ୍ତୁ ଗୋପୀମାନଙ୍କ ସମ୍ବନ୍ଧରେ କିଛି ଜଣାଇବାକୁ ବା ଲେଖିବାକୁ ଯୋଗମାୟାଙ୍କର ନିର୍ଦ୍ଦେଶ ନାହିଁ, "କାରଣ ବର୍ତ୍ତମାନ ଯେପରି ହାଓ୍ୱା ବହୁଛି, ଏଇ ସମୟରେ ଯଦି କୌଣସି ଗୋପୀଙ୍କୁ ବର୍ଣ୍ଣନା କରାଯିବ, ତେବେ ବିଚରା ଗୋପୀଟିକୁ ଲୋକଙ୍କଠାରୁ ଟାହିଟାପରା କେତେ ବ୍ୟଙ୍ଗ ବିଦ୍ରୂପ, ସମାଲୋଚନା ଓ ଆଲୋଚନାମାନ ଶୁଣିବାକୁ ପଡ଼ିବ । ଗୋପୀମାନଙ୍କୁ ପରିଚିତ କରାଇ ଦିଆଯିବା ସମୟ ଆସିଲେ, ଅର୍ଥାତ୍ ୨୦୦୭ ବେଳକୁ ।"

—"ଏଇ ସମୟରେ 'ଅନନ୍ତଯୁଗ'ର ଶୁଭାରମ୍ଭ ହେଉଥିବ । ସତ୍ୟର ଆଗମନ ଓ କଳିର ପ୍ରସ୍ଥାନ ସମୟେ ଗୋପୀମାନେ ନିର୍ଭୟରେ ଥିବେ । ସେମାନଙ୍କୁ ଟାହିଟାପରା ବା ସମାଲୋଚନା କରିବା ପାଇଁ ଆଉ କେହି ଦୁଷ୍ଟଜନ ଥିବେ । ସେହି ସମୟ ଦ୍ୱାପର ଯୁଗର ବାକି ଥିବା ଅଧେ ଲୀଳାଖେଳା ହେବ ।"

**ଭକ୍ତ ଶ୍ରୀ ଲକ୍ଷ୍ମୀଧର ମିଶ୍ର, ଗ୍ରାମ-ଏକତଳା, ଜି-ଯାଜପୁର ଠାରେ ଲୟ ଲଗାଇଥିଲେ ।**

ତାଙ୍କ ମନରେ କଥା—"ପ୍ରଭୁ ! ମୋ କୁଟୀରରେ କେବେ ପାଦ ପଡ଼ିବ ? ବହୁ ଜାଗା ଯାଇଛି, ବହୁ ସାଧୁଙ୍କୁ ଦେଖିଛି, କିନ୍ତୁ ମୋ ମନ କେଉଁଠି ବୁଝୁ ନାହିଁ, ସବୁ ଠକାଠକି କରୁଛନ୍ତି । ଏ ଦୁନିଆଁ ବକ୍ଷରୁ, ଏ ଅସତ୍ୟ ଏ ଅନ୍ୟାୟ, ଏ ଦୁରାଚାରୀଙ୍କର କେବେ ବିନାଶ ହେବ ? ଆମକୁ ବହୁ କଷ୍ଟ ବହୁ ଯାତନା ମିଳୁଛି । ହେ ଲୀଳାମୟ ! ଲୀଳା ଆରମ୍ଭ କରନ୍ତୁ !! ଆପଣଙ୍କଠାରୁ ବଚନ ପାଇଲେ ଦେବୀ ମା' ମୋତେ ଦର୍ଶନ ଦେବେ ରାତିରେ । ଏଇ ଆଶା ନେଇ ଆସିଛି ତବ ଦର୍ଶନକୁ ।"

**ଟୀକା ଟିପ୍ପଣୀ**—"ଏଇ ଭକ୍ତଜଣକ ଜାତିରେ ଅଟନ୍ତି ବ୍ରାହ୍ମଣ । ଅଚଳା ଭକ୍ତିରେ ବାନ୍ଧି ପାରିଥିଲେ ପ୍ରଭୁଙ୍କ ମନକୁ । ପ୍ରଭୁଙ୍କର ଇଚ୍ଛା ଥାଏ ୟା'ଙ୍କରି ହସ୍ତରୁ ଟିକେ ପୂଜା ଆତିଥ୍ୟ ଗ୍ରହଣ କରିବାକୁ । ଦୂରରେ ଥାଇଁ ଡୋରି ଲଗାଇଦେଲେ ।"

"ଆଉ ବା ଭକ୍ତ ରହିପାରନ୍ତି କିପରି ? ରାତ୍ରରେ ସ୍ୱପ୍ନ ଦେଖିଲେ । ସକାଳୁ ଆସି ପ୍ରଭୁଙ୍କ ପାଖରେ ଛିଡ଼ା ହୋଇଗଲେ । ଭାବବିନୋଦିଆଙ୍କୁ ଧରିପାରିଲେ, ଭାବରେ ବାନ୍ଧିନେଇ ସ୍ୱ-ଗୃହରେ ପୂଜାର୍ଚ୍ଚନା କରି ସନ୍ତୋଷ ଲଭିଲେ ।"

## ଭକ୍ତ ଶ୍ରୀ ଗଣେଶ୍ୱର ସିଂହ, କଟକର ଚାନ୍ଦିନୀଚୌକ ଠାରେ ରହି ପ୍ରଭୁଙ୍କ ପାଦପଦ୍ମରେ ଲୟ ରଖି ଦୁଃଖ ଜଣାଇଥିଲେ

''ଡାକି ଡାକି ଥକି ଗଲିଣି,
ଆଉ ହରି ତୋତେ ଡାକିବିନାହିଁ,
ଡାକି ଡାକି ଥକି ଗଲିଣି ।
ଧ୍ରୁବ ପ୍ରହଲାଦ ହରିଣୀ ଗଜରାଜ ପାଣ୍ଡବ ରାଣୀ,
ପାପୀ ଅଜାମିଳ ହୋଇଲା ଅମର
ଚାଣ୍ଡାଳରୁ ହୀନ ହୋଇଲି ମୁହିଁ ।
ଡାକି ଡାକି ଥକି ଗଲିଣି,
ଆଉ ହରି ତୋତେ ଡାକିବି ନାହିଁ ।୧।
ଜଣାଇବ କିସ ସବୁତ ଏ ଦାସ,
ଲେଖି ଜଣାଉଛି ଛାମୁରେ ରହି ।
ଡାକି ଡାକି ଥକି ଗଲିଣି,
ଆଉ ହରି ତୋତେ ଡାକିବି ନାହିଁ,
ଡାକି ଡାକି ଥକି ଗଲିଣି ।୨।

ପ୍ରତିଦିନ ସନ୍ଧ୍ୟାରେ ଛୋଟିଆ କାଠ କେବିନ୍‌ରେ ବସି ଦୀପଟିଏ ଲଗାଇ, ଧୂପଟିଏ ଜାଳି, ପ୍ରଭୁଙ୍କୁ ଭକ୍ତି ଅର୍ଘ୍ୟ ସମର୍ପଣ କରି ଲେଖିଥିବା ଦୋକାନ ମଝିରେ ବସି ରହିଥାନ୍ତି ଭକ୍ତ ଗଣେଶ୍ୱର । ଖାଇଲେ ଖାଇଲେ ନ ଖାଇଲେ ନାହିଁ ମନରେ ନ ଥାଏ ଦୁଃଖ । ଯିଏ ପ୍ରଭୁଙ୍କୁ ସଦାବେଳେ ସ୍ମରଣ କରେ, ସେ ଭୁଲିଯାଏ ଭୋକ । ଏ ୮୨ ବର୍ଷ ବୃଦ୍ଧ ଅବସ୍ଥାରେ ସେ ଚଳଚଞ୍ଚଳ ଥାନ୍ତି । ଜନ୍ମ ଦେଇଥିବା ପୁଅ ଓ ଝିଅମାନଙ୍କୁ ବଡ଼ କରେଇ ଦେଇ ଅର୍ଥାତ୍ ବିବାହ କାର୍ଯ୍ୟ ବଢ଼େଇ ଦେଇ, ସେମାନଙ୍କ ଜଞ୍ଜାଳରୁ ଟିକେ ମୁକ୍ତି ପାଇ, ପ୍ରଭୁଙ୍କୁ କିପରି ପାଇବେ ବା ସାନ୍ନିଧ ଲାଭ କରିବେ, ଏହି ଉଦ୍ଦେଶ୍ୟରେ ପରିବାରଙ୍କଠାରୁ ଦୂରେଇ ରହିଛନ୍ତି ।

ସଦାସର୍ବଦା ମନ ଥାଏ ପ୍ରଭୁଙ୍କ ପାଦରେ । ଏକୁଟିଆ ବସି ଭଜନ ଗାଉ ଗାଉ ଚକ୍ଷୁରୁ ଲୋତକ ଝରେ । ଯେତେବେଳେ ଭାବବିନୋଦିଆଙ୍କୁ ସ୍ମରଣ କରୁଥାନ୍ତି, "ପ୍ରଭୁ ଯାଇଁ ବସିପଡ଼ନ୍ତି ଭକ୍ତଟିର ଭଙ୍ଗା ଖଟୁଲୀ ଉପରେ । ଦୁହେଁ ଦୁହିଁଙ୍କର ଦୁଃଖ ବିଷୟରେ ଆଲୋଚନା କରିବସନ୍ତି । ଭକ୍ତ କହୁଥାଏ ନିଜର ଦୁଃଖର କଥା ଏବଂ ପ୍ରଭୁ ମଧ କହୁଥାନ୍ତି ତାଙ୍କ ହୃଦୟ ମଧରେ ଥିବା ଦୁଃଖର କାହାଣୀ, ଯେଉଁଥିପାଇଁ କି ସେ ଦିବାରାତ୍ରି ଧ୍ୟାନମଗ୍ନ ରହିଥାନ୍ତି ଓ କାହାକୁ କାହାକୁ ଖୋଜୁଛନ୍ତି ବୋଲି ଜଣାଇଥାନ୍ତି ।"

"ପ୍ରଭୁ ମାୟା ରଚନା କରିଦିଅନ୍ତି । ଭକ୍ତଟିର ସଙ୍ଗେ କଥାବାର୍ତ୍ତା ହୁଅନ୍ତି, କିନ୍ତୁ ସେ ଚିହ୍ନିପାରନ୍ତି ନାହିଁ ବା ମାୟାଧରଙ୍କ ମାୟାକୁ ଭେଦି ପାରନ୍ତି ନାହିଁ । ଏକତ ହେଉଛି ଲୀଳା, ଆଉ ଏଇତ ହେଉଛି ଖେଳା, ଯାହାତ ବହୁ ଆଗରୁ ମାଳିକାରେ ଲେଖା ହୋଇଥିଲା ।"



# ଷଷ୍ଠ ପରିଚ୍ଛେଦ

## ଗୋପୀ ଓ ଗୋପାଳ ଏବଂ ଭକ୍ତମାନଙ୍କ ଜାଣିବା ପାଇଁ, ମାଳିକାର ଗୁପ୍ତଠାର, ଗାର, ତତ୍ତ୍ୱ ଓ ତଥ୍ୟରେ ଥିବା କଠିନ ଶବ୍ଦଗୁଡ଼ିକର ସରଳ ଭାବାର୍ଥ ।

ଅ—ବିଷ୍ଣୁ, ପ୍ରଣବର ଆଦ୍ୟ ଅକ୍ଷର ।

ଅକର୍ମ—ଫଳକାମନା ରହିତ କର୍ମ । ସାଧକ ପାଇଁ ଏହି କର୍ମ ଶ୍ରେୟ ।

ଅଖଣ୍ଡ—ପୂର୍ଣ୍ଣ ବ୍ରହ୍ମ । ଅଂଶ ବା ଖଣ୍ଡିତ ନୁହଁ ।

ଅଗ୍ନିପାଣି—ସୂର୍ଯ୍ୟ ଚନ୍ଦ୍ର ।

ଅଗମ୍ୟ—କଠୋପନିଷଦରେ ଏହା ଆତ୍ମାର ସ୍ୱରୂପ । ଶବ୍ଦ ମାଧ୍ୟମରେ ଏହାକୁ ଶୁଣାଯାଏ ଏବଂ ବୁଝାଯାଏ । 'ଆଶ୍ଚର୍ଯ୍ୟୋ ବକ୍ତା

ଆଶ୍ଚର୍ଯ୍ୟୋସ୍ୟ ଶ୍ରୋତା ।' ଅଗମ୍ୟରେ ଭାବାର୍ଥ ହେଉଛି—ଯେଉଁଠି ପହଞ୍ଚି ହୁଏନାହିଁ କିମ୍ବା ଯାହା ବହୁ କଷ୍ଟରେ ଲବ୍‌ଧ ହୁଏ ।

ଅଚ୍ୟୁତ—ଯାହାର ଚ୍ୟୁତି ବା ପରିବର୍ତ୍ତନ ନାହିଁ । ଜଗନ୍ନାଥ, କୃଷ୍ଣ ।

ଅଜୟ ଗଡ଼—ଶୂନ୍ୟ ମନ୍ଦିର, ମହାକାଶ ।

ଅଜପାଜପ—ଅଜପା ନାମକ ଗାୟତ୍ରୀ ଜପ କରିବା, ଅଥବା ହଂସ ନାମକ ମନ୍ତ୍ର ଜପ କରିବା । ଏହା ଜପ ପନ୍ଥାର ବିରୋଧୀ । କାରଣ ଜପ, ମାନସିକ ଓ ଶୁଦ୍ଧ ଭାବନାରୁ ଦୂରରେ ରହି କରାଯାଉଥିଲା । ଅଜପା ମନ୍ତ୍ର ହେଲା—'ଜପ ତପ ତର ରହ ।'

ଅଜାମର—ଅଜର ଅମର, ଅର୍ଥାତ୍ ଜରା ମୃତ୍ୟୁହୀନ ।

ଅଠରନଳା—ଶ୍ରୀକ୍ଷେତ୍ର ପୁରୀ ନିକଟସ୍ଥ ଏକ କ୍ଷୁଦ୍ର ନଦୀଧାର । ଏହି ନଦୀ ଧାର ଉପରେ ଅଠର ନଳାଯୁକ୍ତ ପୋଲଟିଏ ଅଛି । ଏହାକୁ ପାର ହୋଇ ପୁରୀରେ ପ୍ରବେଶ କରିବାକୁ ହୁଏ ।

ଅଣଚାଶ ଚୋର—ଅଣଚାଶ ପବନ ।

ଅଣାକ୍ଷର—ପରଂବ୍ରହ୍ମ, ଯାହାକୁ କୌଣସି ଅକ୍ଷର ସଂଯୋଗରେ ଜାଣି ହୁଏ ନାହିଁ । ସେ ଅରୂପ ଓ ଅଣାକାର, ମାତ୍ର ଅକ୍ଷର ପ୍ରଣବାତ୍ମକ ଓ ରୂପଯୁକ୍ତ ।

ଅଦୃଷ୍ଟ ଭୂମି—ଭୂଲତା, ଦୃଷ୍ଟି ଅଗୋଚରରେ ଥିବା ଭୂମି ।

ଅନନ୍ତ—ସପ୍ତ ଫେଣଯୁକ୍ତ ନାଗ । ଶରୀର ଭେଦରେ ୨ କର୍ଣ୍ଣ +୨, ନାସା+୨ ଚକ୍ଷୁ+ମୁଖ—ଏମନ୍ତେ ସାତ ହେଲା । ଅଶେଷ, ଅସୀମ, ବ୍ରହ୍ମ । ବଳରାମ ।

ଅନାଦି—ଯାହାଙ୍କର ଆଦି ବା ମୂଳ ଜଣାନାହିଁ ।

ଅନାମ—ଅଣାକାର ବ୍ରହ୍ମ, ଶବ୍ଦ ବ୍ରହ୍ମ ।

ଅନାମ ବୃକ୍ଷ—ବାୟୁ ନଥିବା ମଣ୍ଡଳ । ଶୂନ୍ୟ ମଣ୍ଡଳ ।

ଅନାମିକା—ନାମଶୂନ୍ୟ ବ୍ରହ୍ମ, ଅଣାକାର ବ୍ରହ୍ମ ।

ଅନାହତ ନାଦ—ଅବ୍ୟକ୍ତ ଶବ୍ଦ ଅନୁଭବ କରିବା ପରେ ବାୟୁକୁ ଊର୍ଦ୍ଧ୍ୱଗାମୀ କରିବା । ତନ୍ତ୍ର ଅନୁସାରେ ହୃଦୟସ୍ଥିତ ଦ୍ୱାଦଶ ଦଳ କମଳ ତଥା ମଧ୍ୟମ ବାକ୍ ।

ଅନିରୁଦ୍ଧ—ଶ୍ରୀକୃଷ୍ଣଙ୍କ ନାତି, ପ୍ରଦ୍ୟୁମ୍ନଙ୍କ ପୁତ୍ର । ଚତୁର୍ବ୍ୟୂହ୍ୟ ମଧ୍ୟରୁ ଏକ ।

ଅଣ୍ଡ—ଶୂନ୍ୟ, ମହାକାଶ ।

ଅପତିତ—ନିୟମ ଭଙ୍ଗ ନ କରିଥିବା ।

ଅପାନ—ଗୁହ୍ୟ ବାୟୁ ।

ଅବଧୂତ—ସର୍ବ ସଂସାରମୁକ୍ତ ସନ୍ନ୍ୟାସୀ । ଅବଧୂତ ଚାରିପ୍ରକାର । ବ୍ରହ୍ମ ଅବଧୂତ, ଶୈବ ଅବଧୂତ, କୂଳ ଅବଧୂତ ଓ ବୀର ଅବଧୂତ । ସର୍ବଶ୍ରେଷ୍ଠ ଅବଧୂତକୁ ପରମହଂସ କହନ୍ତି ।

ଅବନା—ଅ ଅକ୍ଷରର ମଣ୍ଡଳ, ଅର୍ଥାତ୍ ବର୍ଣ୍ଣଶୂନ୍ୟ । ଜ୍ଞାପ୍ତି ମାତ୍ର ଦ୍ୟୋତକ । 'ପରରଙ୍ଗ ଶଶବଦ' ଏହା ଅବନା ମନ୍ତ୍ର ।

ଅବନାବନ—ପ୍ରଣବ ମନ୍ତ୍ରକୁ ଜପ କର । ମନନ ଓ ଅନ୍ତର୍ମନ ମଧ୍ୟରେ ନିଦ୍ଧିଧ୍ୟାସନ ସହ ଜପ ବା ସ୍ମରଣ କରିବା ।

ଅବାଢ଼—ସାଧନାର ଏକ ଅବସ୍ଥା ।

ଅବାରଣ ଭୂଇଁ—ସହସାର ।

ଅଭେଦ ମାର୍ଗ—ଭଲ ମନ୍ଦ, ନ୍ୟାୟ ଅନ୍ୟାୟ ଓ ପର ଆପଣା ଭେଦଭାବ ରହିତ ମାର୍ଗ ।

ଅଭକ୍ଷ୍ୟ ଦ୍ରବ୍ୟ—ପ୍ରଶ୍ୱାସ ପବନ ।

ଅମନ—ଆକାଶ ।

ଅମନ ମନ୍ଦିର—ନିରଞ୍ଜନଙ୍କ ସୌଧ, ମୁକ୍ତିର ପ୍ରାସାଦ ।

ଅମନ ସୂତ୍ରରେ—ଶୂନ୍ୟବିନ୍ଦୁ ଘରେ, ଆକାଶରେ ମନ ଓ ବାୟୁ ଏକତ୍ର ଲୀନ ହେବାର ରୀତି ।

ଅମନ ଶିଖର—ମହାଶୂନ୍ୟ, ବିନ୍ଦୁ ଉପରେ ଥିବା ଅଲେଖ ପୁର ।

ଅମାପ ମାପ—ବାୟୁକୁ ସଂଯମ କରିବା ।
ଅମୁହାଁ ଦେଉଳ—ନିରାକାରଙ୍କ ନିବାସ ସ୍ଥଳ, ବ୍ରହ୍ମରନ୍ଧ୍ର ସ୍ଥଳ ।
ଅମଳ—ଅମଳିନ । ସ୍ଥଳ ବିଶେଷରେ ମଦ୍ୟ ।
ଅରୁପାନନ୍ଦ—ଅଣାକାର ଆନନ୍ଦମୟ ପୁରୁଷ ।
ଅରେଖ—ରୂପରେଖ ନଥିବା ଶୂନ୍ୟ ବ୍ରହ୍ମ ।
ଅରେହ—ଅଲେଖ ବ୍ରହ୍ମ, ଅରେଖ ।
ଅର୍ଦ୍ଧମାତ୍ରା—ଯୋଗମାୟା, ସୁଦର୍ଶନ ।
ଅଲେଖ—ଚିହ୍ନବର୍ଣ୍ଣ ଶୂନ୍ୟ ପରଂବ୍ରହ୍ମ । ଦୃଶ୍ୟମାନ ଜଗତର ସ୍ରଷ୍ଟା ଓ ପାଳନକର୍ତ୍ତାଙ୍କୁ ସ-ରୂପ ବା ସାକାର ଭାବେ ପରିକଳ୍ପନା କରାଯାଏ । ମାତ୍ର ପରଂବ୍ରହ୍ମ ଅଲେଖ ଅରୂପ ।
ଅଷ୍ଟାଙ୍ଗ—ମୁଖ, ନାସା, ଚକ୍ଷୁ, କର୍ଣ୍ଣ-ପ୍ରତ୍ୟେକ ଦୁଇ ହେତୁ ଅଷ୍ଟାଙ୍ଗ ।
ଅଷ୍ଟଗିରି—(କ) ହରେ ରାମ ହରେ କୃଷ୍ଣ ସାଧନାର ମନ୍ତ୍ରକୁ ଅଷ୍ଟଗିରି ରୂପେ ପରିକଳ୍ପନା କରାଯାଇଛି । (ଖ) ମେରୁଗିରି ବା ଅଷ୍ଟଗିରି ତ୍ରିବେଣୀ ଘାଟରେ ଅବସ୍ଥିତ । ମହାମାୟା ଏଠାରେ ଜାଗ୍ରତ ପ୍ରହରୀ । (ଗ) ଅଷ୍ଟ ଅଙ୍ଗରେ ଯୋଗ ସାଧନାକୁ ଅଷ୍ଟଗିରି ଲଘନ କୁହାଯାଏ ।
ଅକ୍ଷର—ଆକାରାଦି ବର୍ଣ୍ଣ । ପରମାତ୍ମା, ନିତ୍ୟ, ନାଗଶୂନ୍ୟ, ପରଂବ୍ରହ୍ମ ।
ଅକ୍ଷରମାନ—ମନ୍ତ୍ରଯାନ୍ତ୍ରାଦି ।
ଆକଟ—ସ୍ଥିର କରିବା ।
ଆଗମ—ମନ୍ତ୍ର ବିଧି ବର୍ଣ୍ଣିତ ଶାସ୍ତ୍ର । ତନ୍ତ୍ର ଶାସ୍ତ୍ର ।
ଆଠମଠ—"ହରେ ରାମ ହରେ କୃଷ୍ଣ" ଆଠ ଅକ୍ଷର । ଏହାକୁ ଆଠମଠ କୁହାଯାଏ ।
ଆଠ ଅକ୍ଷର—ହରେ ରାମ ହରେ କୃଷ୍ଣ ମନ୍ତ୍ର ଅଷ୍ଟାକ୍ଷର ।
ଆତ୍ମା—ନିଃଶ୍ୱାସ ପବନ, ପ୍ରାଣୀ ।
ଆଦିମାତା—ଅର୍ଦ୍ଧମାତ୍ରା, ଯୋଗମାୟା, ସୁଦର୍ଶନ ।

ଆଦିମୂଳ—ଜଗନ୍ନାଥ, ଶବ୍ଦ ବ୍ରହ୍ମ ।

ଆହାର—ବାୟୁ ସଞ୍ଚାଳନ ପ୍ରଣାଳୀ ବୃତ୍ତି ।

ଆହୁଟ—ସାତ ।

ଆଜ୍ଞାଚକ୍ର—ହଠଯୋଗ ସାଧନାରେ କୁଣ୍ଡଳିନୀକୁ ଜାଗ୍ରତ କରି ମେରୁଦଣ୍ଡ ସାହାଯ୍ୟରେ ଉପରକୁ ଉଠାଇଲେ ଷଡ଼ଚକ୍ର ଭେଟ ହୁଏ । ଏହି ଚକ୍ରର ଅନ୍ତିମ ଚକ୍ରକୁ ଆଜ୍ଞାଚକ୍ର କୁହାଯାଏ । ଏଠି ପହଞ୍ଚି ପାରିଲେ ସାଧକକୁ ଜ୍ଞାନମୟ ସ୍ଥିତିର ଅନୁଭୂତି ମିଳେ ।

ଇନ୍ଦ୍ରଚକ୍ର—ଲିଙ୍ଗଚକ୍ର, ଷଡ଼ଚକ୍ର ମଧ୍ୟରୁ ଅନ୍ୟତମ ଚକ୍ର ।

ଇଂଳା—ଇଡ଼ା । ତିନି ନାଡ଼ି ମଧ୍ୟରୁ ଗୋଟିଏ । ଏହାକୁ ଭଗବତୀ ଗଙ୍ଗା ବୋଲାଯାଏ । ସାଧାରଣତଃ ଏହା ଦକ୍ଷିଣ ନାସାର ବାୟୁ ।

ଈଶାନ—ଶିବ ମହେଶ୍ୱର ।

ଉଜାଣି—ପ୍ରାଣାୟାମ ଦ୍ୱାରା ବାୟୁକୁ ଊର୍ଦ୍ଧ୍ୱମୁଖୀ କରିବା ।

ଉଦାନ—କଣ୍ଠବାୟୁ ।

ଉଦେଅସ୍ତ—ଜନ୍ମମୃତ୍ୟୁ ।

ଉଦେଗିରି—ବିବେକ, ଉଦୟ ପର୍ବତ ।

ଉର୍ମି—ବତିଶ କଳା ଭିତରୁ ଏକ କଳା ।

ଉଲଟ—ପ୍ରଶ୍ୱାସ ବାୟୁ ।

ଊଁକାର—ଓଁକାର, ପ୍ରବଣ ମନ୍ତ୍ର ।

ଋଷିଫଳ—ହରିଡ଼ା ।

ଏକପାଦ—ଆତ୍ମା ।

ଏକାକ୍ଷର ମନ୍ତ୍ର—ଓଁ । ଜ୍ଞାନମିଶ୍ରା ଭକ୍ତିମାର୍ଗର ଉପାସକମାନେ ଓଁ ଉପାସନା ଉପରେ ଅଧିକ ଗୁରୁତ୍ୱ ଦିଅନ୍ତି । ପ୍ରବଣ ମନ୍ତ୍ର ।

ଏକାଦଶ ତତ୍ତ୍ୱ—ପଞ୍ଚଭୂତ, ପଞ୍ଚଇନ୍ଦ୍ରିୟ ଓ ଆତ୍ମା ମିଶି ଏକାଦଶ ।

ଏଗାର ଇନ୍ଦ୍ରିୟ—ଦଶଦ୍ୱାର, ଦଶ ଇନ୍ଦ୍ରିୟ ଏବଂ ମନ । ଏମନ୍ତେ ଏଗାର ।

ଓଁ, ଙ—ପ୍ରଣବ ମନ୍ତ୍ର, ବୀଜମନ୍ତ୍ର ।

ଓମିତି—ଓଂ ବା ଅଇମ । 'ଅ' ସତ୍ତ୍ୱଗୁଣ ସମ୍ପନ୍ନ ବିଷ୍ଣୁ, 'ଉ' ତମୋଗୁଣସମ୍ପନ୍ନ ଶିବ, ଓ 'ମ' ରଜୋଗୁଣ ସମ୍ପନ୍ନ ବ୍ରହ୍ମା । ଙ ଅକ୍ଷରର କୁଣ୍ଡଳାକାରଟି ହେଉଛି ଶେଷନାଗ ଅନନ୍ତ ।

ଓଲଟ—ପ୍ରଶ୍ୱାସ ପବନ ।

ଓଲଟ ଗଙ୍ଗା—ଗଚ୍ଛନ୍ତି ପାପାନି ଅନୟା ଇତି ଗଙ୍ଗା—ଅର୍ଥାତ୍ ଗଙ୍ଗା ପାପ ହରଣକାରିଣୀ । ହଠଯୋଗ ସାଧନାରେ ଅଧୋମୁଖୀ ଶ୍ୱାସକୁ ପ୍ରାଣାୟାମ ଦ୍ୱାରା ଊର୍ଦ୍ଧ୍ୱମୁଖୀ କରି ବ୍ରହ୍ମାଣ୍ଡରେ ପ୍ରବାହିତ କରାଯାଏ । ତାହା ହିଁ ଓଲଟ ଗଙ୍ଗା । ତା' ଛଡ଼ା ଇଂଳା ନାଡ଼ିକୁ ମଧ୍ୟ ଗଙ୍ଗା କୁହାଯାଏ ।

ଙକାର—ସଗୁଣ । ହିନ୍ଦୁ ଧର୍ମରେ ଙ କାରକୁ ଦେବତ୍ରୟୀ (ବ୍ରହ୍ମା, ବିଷ୍ଣୁ, ମହେଶ୍ୱର) ରୂପେ ଗ୍ରହଣ କରାଯାଏ ।

କମଳ—ବ୍ରହ୍ମରନ୍ଧ୍ର । ହଠଯୋଗରେ ଶ୍ୱାସ ନିରୋଧ ଦ୍ୱାରା କୁଣ୍ଡଳିନୀକୁ ଜାଗ୍ରତ କରି ଊର୍ଦ୍ଧ୍ୱମୁଖୀ କୁହାଯାଏ । ଏହା ଷଡ଼ଚକ୍ର ବା ଷଡ଼କମଳକୁ ସ୍ପର୍ଶ କରି ଊର୍ଦ୍ଧ୍ୱମୁଖୀ ହୁଏ । ଏହି କମଳଗୁଡ଼ିକ ହେଲା—

୧ । ଆଜ୍ଞାଚକ୍ର—ଭ୍ରୂଦ୍ୱୟ ମଧ୍ୟରେ ଏହାର ଅବସ୍ଥିତ । ଏହା ଦୁଇ ଦଳ ବିଶିଷ୍ଟ କମଳ ।

୨ । ମୂଳାଧାର ଚକ୍ର—ମେରୁଦଣ୍ଡ ମୂଳରେ ଏହାର ସ୍ଥିତି । ଏହା ପ୍ରଥମ କମଳ । ଏହା ଚାରିଦଳ ବିଶିଷ୍ଟ ।

୩ । ସ୍ୱାଧିଷ୍ଠାନ ଚକ୍ର—ନାଭିପ୍ରଦେଶ ହିଁ ଏହାର ସ୍ଥାନ । ଏହା ଷଡ଼ ଦଳ ବିଶିଷ୍ଟ କମଳ ।

୪ । ମଣିପୂର ଚକ୍ର-ବକ୍ଷ ଦେଶର ନିମ୍ନରେ ଏହା ସ୍ଥିତି । ଏହା ଦଶଦଳ ବିଶିଷ୍ଟ ପଦ୍ମ ।

୫ । ଅନାହତ ଚକ୍ର—ହୃଦୟ ମଣ୍ଡଳରେ ଏହା ଅବସ୍ଥିତ । ଏ ଚକ୍ର ଦ୍ୱାଦଶ ପାଖୁଡ଼ା ବିଶିଷ୍ଟ ପଦ୍ମ ।

୬ । ବିଶୁଦ୍ଧାଖ୍ୟ ଚକ୍ର—କଣ୍ଠ ତଟରେ ଏହାର ସ୍ଥାନ ଏ କମଳ ଷୋଡ଼ଶ ଦଳ ବିଶିଷ୍ଟ ।

କମାର ଶାଳ—ଅର୍ଦ୍ଧମାତ୍ରାର ଉପର ସ୍ଥାନ, ତ୍ରିକୂଟ ।

କଳ୍ପବଟ—ଶରୀର ମଧ୍ୟରେ ବ୍ରହ୍ମର ଆଶ୍ରୟ ସ୍ଥଳ ହିଁ କଳ୍ପବଟ । ତାଳୁ ।

କଳ୍ପ ବିଭୂତି—କଳ୍ପକାଳ ରହିବାର ମହୌଷଧି ।

କଳ୍ପ ବୃକ୍ଷ—ଗୋଲୋକ ବାହାରେ ଥିବା ବୃକ୍ଷ । ଅନ୍ୟ ଅର୍ଥରେ ତାଳୁ ।

କାଉଁରୀ ମଣ୍ଡଳ—ବ୍ରହ୍ମର ନିବାସ ସ୍ଥଳ, ଅର୍ଥାତ୍ ତ୍ରିକୂଟର ପଛ ସ୍ଥଳ । କପାଳ, ନାଦ ମଣ୍ଡଳ ।

କାମକର୍ମ—ଫଳ କାମନାଯୁକ୍ତ କର୍ମ । ଏଭଳି କାର୍ଯ୍ୟଦ୍ୱାରା ମୁକ୍ତିଲାଭ ହୁଏ ନାହିଁ ।

କାମବୀଜ—କାମବୀଜ ମନ୍ତ୍ର ହେଉଛି—'ଓଁ କ୍ଳୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନ ବଲ୍ଲଭାୟ' । ଜଗନ୍ନାଥ ହିଁ କ୍ଳୀଂ, କାମବୀଜ ।

କାଳବଳ—ଆଖିର ପଲକ ପାତ, ମୃତ୍ୟୁ ।

କାଳିନ୍ଦୀ ହ୍ରଦ—ହୃଦୟ । ଯମୁନା ନଦୀର ଅଂଶ ବିଶେଷ ।

କାଶୀ—ଶିବ ତୀର୍ଥକ୍ଷେତ୍ର ବିଶେଷ । ଏହା ଉତ୍ତର ପ୍ରଦେଶରେ ଅବସ୍ଥିତ । ବାରାଣସୀ ।

କ୍ଳୀଂ—ଜଗନ୍ନାଥ ବା କୃଷ୍ଣ ।

କୁଣ୍ଡଳିନୀ—ଅର୍ଦ୍ଧମାତ୍ରା । ଦୁର୍ଗା ଅଥବା ଶକ୍ତିଙ୍କର ଏକ ରୂପ । ଶରୀର ଭେଦରେ ମୂଳାଧାର ଚକ୍ରର ଏକ ଶକ୍ତି ।

କୁମନ—ତେଜ, ଆଲୋକ ।

କୁମ୍ଭକ—ପ୍ରାଣାୟମ କରିବାବେଳେ ବାୟୁକୁ ରୋଧ କରିବାର ପ୍ରଣାଳୀ ।

୨କୈଳାସ—ତ୍ରିକୂଟ ସ୍ଥଳ । ଇଙ୍ଗଳା, ପିଙ୍ଗଳା ଓ ସୁଷୁମ୍ନାର ମିଳନ ସ୍ଥଳ । ତନ୍ତ୍ର ସାଧନାରେ ସହସ୍ର ଦଳ ମଧରେ ହିଁ କୈଳାସ ଅବସ୍ଥିତ ବୋଲି ବିଶ୍ୱାସ କରାଯାଏ ।

କୃଷ୍ଣ ଚତୁରାକ୍ଷର—କ୍ଲୀଂ କୃଷ୍ଣାୟ ଏହି ଚାରି ଅକ୍ଷର ମନ୍ତ୍ର ।

ଖଟ—ଶରୀର ।

ଖଣ୍ଡା—ପ୍ରଶ୍ୱାସ ପବନ । ଷଡ଼ ରିପୁ ।

ଗଡ଼ନାୟକ—ଜ୍ଞାନ ଶକ୍ତି ବିବେକ । ଶରୀରର ରଖୁଆଳ ।

ଗଙ୍ଗା ଯମୁନା—ସୁମନ ଓ କୁମନ ; ଇଙ୍ଗଳା ଓ ପିଙ୍ଗଳା ।

ଗଣ୍ଠି—ରହସ୍ୟ ।

ଗିରି—ତ୍ରିକୂଟ, ଅନ୍ୟ ନାମ ହେମଗିରି ।

ଗୁରୁ—ଜ୍ଞାନାଲୋକର ମାଧ୍ୟମ. "ଗାରୟତ ଜ୍ଞାନମ୍ ଇତି ଗୁରୁଃ ।"

ଗୁହ୍ୟଚକ୍ର—ଷଡ଼ଚକ୍ର ମଧ୍ୟରୁ ଧନ୍ୟାତମ, ମଳଦ୍ୱାର ଚକ୍ର ।

ଗୋପ ପାଟଣା—ବ୍ରହ୍ମର ଲୀଳାଭୂମି ।

ଗୋଲକ ପାଟଣା—ହୃଦୟ ମନ୍ଦିର । ବୈକୁଣ୍ଠର ଉପରେ ସ୍ୱନାମ ପ୍ରସିଦ୍ଧ ଶ୍ରୀକୃଷ୍ଣ ଲୋକ ।

ଗୋଲା ହାଟ—ବ୍ରହ୍ମର ନିବାସ ସ୍ଥଳ ।

ଗୋହିରା ଟିକିରି—ଯାଜପୁର ଓ ଭିଦ୍ରକର ମଧ୍ୟସ୍ଥ ପ୍ରଶସ୍ତ ପାଟଭୂମି ।

ଘଟ—ଶରୀର, ଦେହ ।

ଘର—ଦେହ ।

ଘଟୁଆଳ—ନାଉରିଆ, ପରମ ପୁରୁଷ ।

ଚଉଷଠୀ ବୀଜ—ବୈଷ୍ଣବଙ୍କ କୀର୍ତ୍ତନ ମନ୍ତ୍ର । ହରେ ରାମ ହରେ କୃଷ୍ଣ ଆଦି ।

ଚତୁର କଳା—ଉର୍ମି, ଧୂର୍ମି, ଜ୍ୟୋତି ଓ ଜ୍ୱାଳା ।

ଚତୁର୍ଦ୍ଦଶ ଭୁବନ—ଚଉଦ ଭୁବନ । ସ୍ୱର୍ଗ ସାତ ଓ ପାତାଳ ସାତ ।

ଚତୁର୍ଦ୍ଧାମୂରତି—ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ।

ଚନ୍ଦ୍ର—ସାଧକର ଦୁଇ ଚକ୍ଷୁ ।

ଚନ୍ଦ୍ର ସୂର୍ଯ୍ୟ ଦ୍ୱାର—ସ୍ତ୍ରୀର ବାମ ପୁଡ଼ାରେ ଓ ପୁରୁଷର ଡାହାଣ ପୁଡ଼ାରେ, ବାୟୁ ଯିବାବେଳେ ଗର୍ଭ ସଞ୍ଚାର ହୁଏ । ଏହାକୁ ଚନ୍ଦ୍ର ସୂର୍ଯ୍ୟଙ୍କ ମିଳନ ପଥ ବୋଲି କୁହାଯାଏ ।

ଚନ୍ଦ୍ରକାନ୍ତି—ବାମାଙ୍ଗ ଆଦି ।

ଚନ୍ଦ୍ରଘରେ—ବାମ ନାସାରେ ବାୟୁ ବହିଲା ବେଳେ ।

ଚନ୍ଦ୍ରଅଙ୍ଗେ—ବାମ ଅଙ୍ଗରେ ସ୍ଥିତି ।

ଚନ୍ଦ୍ରନାଦ—ବାବ (ଚନ୍ଦ୍ର)ରେ ଆରମ୍ଭ କରି ଡାହାଣ (ସୂର୍ଯ୍ୟ)କୁ ଫେରାଇ ପବନକୁ ଉପରକୁ ଉଠାଇବା ପ୍ରଣାଳୀ । ଏହି କାଳରେ ମନକୁ ନିଶ୍ଚଳ କଲେ ଏକ ଦିବ୍ୟ ନାଦ ଶୁଣି ହେବ ।

ଚାରିକୁଣ୍ଡ—ରାଧାକୁଣ୍ଡ, ଶ୍ୟାମକୁଣ୍ଡ, ଗୋପୀକୁଣ୍ଡ ଓ ମଣିକୁଣ୍ଡ ।

ଚାରିଖାନି—ସଚରାଚର ଜଗତ, ଚାରି ପ୍ରକାର ଜୀବ ଯୋନି ।

ଚାରି ଚୌରସ—ଧର୍ମ, ଅର୍ଥ, କାମ, ମୋକ୍ଷର ଦିଗବାରିଣୀ ସଂସାର ।

ଚାରି ନାମ—ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ।

ଚାରି ପାଇକ—ଧର୍ମ, ଅର୍ଥ, କାମ, ମୋକ୍ଷ ଭାବନାର ପ୍ରତିନିଧି ।

ଚାରି ବେଦ—ଋକ୍, ସାମ, ଯଜୁଃ, ଅଥର୍ବ ଆଦି ଚାରି ବେଦ ।

ଚାରି ଯୂଣ—ଧର୍ମ, ଅର୍ଥ, କାମ, ମୋକ୍ଷ ।

ଚାରି ସରୋବର—ପମ୍ପା, ଶୂନ୍ୟ, ଜ୍ଞାନ ଓ ବ୍ୟାସ ସରୋବର ।

ଚେତାଦ୍ୱାର—ପରଂବ୍ରହ୍ମର ଦ୍ୱାର, ଚୋଟା ପାଇବା-ଚିନ୍ମୟ ପରଂବ୍ରହ୍ମଙ୍କୁ ପାଇବା ପାଇଁ ଉପାୟ ଖୋଜିବା ।

ଚୋର—କାଳ । ପ୍ରଶ୍ୱାସ ପବନ । ବାସନାଲିପ୍ତ ମନ ।

ଛଡ଼ଚକ୍ର—ଷଡ଼ଚକ୍ର ଦେଖ ।

ଛାଗ ବାଘ—ମନ ବିବେକ । ଅଜ୍ଞାନ ଓ ଜ୍ଞାନ ।

ଛାୟା—ସାଧନାର ଏକ ଅବସ୍ଥା । ଛାୟା ସାଧନା କରି ପାରିଲେ ସାଧକର ସିଦ୍ଧି ଲାଭର ପଥ ସୁଗମ ହୁଏ ।

ଛେଳି ଗିଳେ ବାଘ—ଷଡ଼ରିପୁ ମଣିଷ ରୂପକ ବାଘକୁ ଗିଳେ ।

ଜଗନ୍ନାଥ—ଜଗତର ନାଥ । କ୍ଲୀଂ ଶକ୍ତି । ପରମ ବ୍ରହ୍ମ । ବେଦର ବର୍ଣ୍ଣନା ଅନୁସାରେ—'ଅପାଣି ପାଦୋ ଜବନୋ ଗୃହୀତା, ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟ କର୍ଣ୍ଣଃ'—ଅର୍ଥାତ୍ ବ୍ରହ୍ମର ହସ୍ତ ନାହିଁ; କିନ୍ତୁ ସେ ଗ୍ରହଣ କରିପାରେ, ପାଦ ନାହିଁ; କିନ୍ତୁ ସେ ସର୍ବତ୍ର ଗମନ କରିପାରେ । କର୍ଣ୍ଣ ନାହିଁ, ତଥାପି ସେ ସବୁ ଶୁଣିପାରେ ।

ଜଳ—ଚନ୍ଦ୍ର ମଣ୍ଡଳର ବାୟୁ, ବାମପଟ ନାସାର ବାୟୁ ।

ଜ୍ୱାଳା—ବତିଶ କଳା ଭିତରୁ ଗୋଟିଏ ।

ଜୀବ ପବନ—ନିଃଶ୍ୱାସ ।

ଜେଠାଶୁର—ମନ । ମନ ସାଧନା ମାର୍ଗର ଦେଢ଼ଶୁର ।

ଜ୍ୟୋତି—ବତିଶ କଳା ଭିତରୁ ଏକ କଳା ।

ଝର—ପବନ ।

ଝାଡ଼—ବ୍ରହ୍ମଲୋକ, ଆଲୋକିତ ମନ ।

ଟେକନ୍ତା ପାଦ—ନିଃଶ୍ୱାସ ।

ଠଣା—ସ୍ଥାନ, ବାସ ।

ଠୂଳ—ଜ୍ୟୋତି, ଅର୍ଦ୍ଧମାତ୍ରା ।

ଠୂଳ ବ୍ରହ୍ମ—ଜ୍ୟୋତି ବ୍ରହ୍ମ ।

ଡମ୍ବରୁ—ନାସିକାର ଅବନତ ସ୍ଥାନ ।

ଡଣାରୁ ନାଶ—ପ୍ରଶ୍ୱାସ ରୋଧ କରି ।

ତରାଇ—ନାବିକ, ପରମାତ୍ମା ।

ତରୁଣୀ ମଣି—ଯୋଗମାୟା ।

ତାଟକ—ତଟସ୍ଥତା, ନିର୍ଲିପ୍ତତା ।

ତିନିଗୁଣ୍ଡା ଦୁଇକଡ଼ା—ତିନିହାତ ଏକ ଚାଖଣ୍ଡ । ପ୍ରତ୍ୟେକ ମଣିଷର ଶରୀର ନିଜ ହାତରେ ସାଢ଼େ ତିନି ହାତ ।

ତିନି ତତ୍ତ୍ୱ—'ହରେ' 'ରାମ' 'କୃଷ୍ଣ' ଏହି ତିନି ଶବ୍ଦର ରହସ୍ୟ ।

ତିନି ତିହୁଡ଼ୀ—ତ୍ରିବେଣୀ । ଗଙ୍ଗା ଯମୁନା ସରସ୍ୱତୀର ମିଳନ ସ୍ଥଳ, ଅର୍ଥାତ୍ ଇଂଳା-ପିଙ୍ଗଳା-ସୁଷୁମ୍ନାର ମିଳନ ସ୍ଥାନ ।

ତୋଳି—ରୋଧକରି ।

ତ୍ରୟ ତତ୍ତ୍ୱ—ସତ୍ତ୍ୱ, ରଜ ଓ ତମ ।

ତ୍ରିକୂଟ—ଇଂଳା, ପିଙ୍ଗଳା ଓ ସୁଷୁମ୍ନାର ସନ୍ଧିସ୍ଥଳ ।

ତ୍ରିଗୁଣ ରଜ୍ଜୁ—ସତ୍ତ୍ୱ; ରଜ ଓ ତମର ବନ୍ଧନ ।

ତ୍ରିତାପ—ଆଧ୍ୟାତ୍ମିକ, ଅଧିଦୈବିକ ଓ ଅଧିଭୌତିକ-ଏହି ତିନି ପ୍ରକାର ଦୁଃଖ ।

ତ୍ରିବେଣୀ—ଇଂଳା, ପିଙ୍ଗଳା ଓ ସୁଷୁମ୍ନାର ମିଳନ ସ୍ଥାନ । ଗଙ୍ଗା (ଦକ୍ଷିଣପୁଡ଼ା) ଯମୁନା (ବାମପୁଡ଼ା) ଓ ସରସ୍ୱତୀ (ମଧ୍ୟସ୍ଥଳ)ର ମିଳିତ ବାୟୁ ।

ଦଶଦ୍ୱାର—ମୁଖ, ନାଭି, ଲିଙ୍ଗ, ଗୁହ୍ୟ, ନାସିକା (ଦୁଇ), ଚକ୍ଷୁ (ଦୁଇ) ଓ କର୍ଣ୍ଣ (ଦୁଇ) ।

ଦକ୍ଷିଣ ଭଜନ—ଡାହାଣ ପୁଡ଼ାର ପବନ ସାଧନ, ସୂର୍ଯ୍ୟଙ୍କ ସ୍ୱରୂପ ଦର୍ଶନ ।

ଦ୍ୱାର—ତ୍ରିକୁଟ ଉପରେ ମହାମାୟାଙ୍କ ଅବସ୍ଥିତି ସ୍ଥାନ ।

ଦିବାନିଶି—ବାମ ନାସା ଓ ଡାହାଣ ନାସାର ବାୟୁ ।

ଦୁଇ—ଜୀବ ଓ ପରମ । ନିଃଶ୍ୱାସ ଓ ପ୍ରଶ୍ୱାସ ।

ଦୋମୁହାଁ ସର୍ପ—ଲୋଭ ଓ ଅହଂକାର, ଶରୀରର ଦଶଦ୍ୱାର ମଧ୍ୟରୁ ଦୁଇ ଦ୍ୱାର ।

ଧବଳ—ଶୂନ୍ୟ ପରଂବ୍ରହ୍ମଙ୍କ ରୂପକାନ୍ତି ହେଉଛି ଧବଳ ।

ଧବଳ ଚିତା—ଅର୍ଦ୍ଧମାତ୍ରା ।

ଧାପ—ତେଜ, ସ୍ଥାନ ।

ଧାମ ବୀଜ—ଅର୍ଦ୍ଧମାତ୍ରା ; ଧ୍ଳଁ ।

ଧୂନି ଘର—ଅନାହତ ନାଦର ମନ୍ଦିର ।

ଧୂର୍ମ—ନାସାର କଳା । ବତିଶ କଳା ମଧ୍ୟରୁ ଅନ୍ୟତମ । ଷୋଳ ଚନ୍ଦ୍ରକଳା ଓ ବାର ସୂର୍ଯ୍ୟକଳା ପରେ ଉର୍ମ ଏବଂ ତା'ପରେ ଧୂର୍ମକଳା ।

ଧ୍ଳୀଂ ବୀଜ—ସୁଦର୍ଶନ । ଶ୍ୟାମ ନାମ ।

ନଉକା—ଶରୀର ।

ନଦୀତଟ—ତ୍ରିକୂଟ ନିକଟସ୍ଥ ଗିରିକନ୍ଦରେ ପ୍ରବାହିତ ନଦୀର ତଟ ।

ନୟାଙ୍ଗ—ଲୟାଙ୍ଗ ଦେଖ ।

ନାଦବିନ୍ଦୁ—କୁଣ୍ଡଳିନୀ ଶକ୍ତି ଜାଗ୍ରତ ହେବା ପରେ ଉର୍ଦ୍ଧ୍ୱଗାମୀ ହେଉଥିବା ଧ୍ୱନି ବା ସ୍ଫୋଟ, ଯାହା ସୁଷୁମ୍ନା ମାର୍ଗରେ ଯାଇ ଷଡ଼ଚକ୍ର ଅତିକ୍ରମ କରି ସହସ୍ରାର ଚକ୍ରରେ ଲୀନ ହୁଏ ।

ନାମତତ୍ତ୍ୱ—ନାମ ଭଜନର ମୂଳ କାରଣ ।

ନାମବ୍ରହ୍ମ—ଜ୍ୟୋତି ରୂପ ।

ନିଗମ—ଅମନ, ଆକାଶ ।

ନିଗମ ଭୁବନ—ନିରଞ୍ଜନ ପୁରୁଷଙ୍କ ବାସସ୍ଥାନ ।

ନିର୍ଗୁଣ—ସତ୍ତ୍ୱ ରଜତମ ଗୁଣ ରହିତ ଆତ୍ମବୋଧଗମ୍ୟ ସତ୍ତା । ବ୍ରହ୍ମର ମାୟା ବିନିର୍ମୁକ୍ତ ସ୍ୱରୂପ ।

ନିଜ ବୃତ୍ତି—ବ୍ରହ୍ମତ୍ୱ ।

ନିର୍ଝର—ପଶ୍ୱାସ ।

ନିତ୍ୟ ରାସସ୍ଥଳୀ—ଅଲେଖ ନିରଞ୍ଜନ ପୁରୁଷ ଅନାଦି ଭୂମିରେ ନିତ୍ୟ ରାସଲୀଳାରେ ମାତିଥାନ୍ତି । କେବଳ ଧ୍ୟାନ ଧାରଣା ଦ୍ୱାରା ବ୍ରହ୍ମର ଚରଣ ପଦ୍ମକୁ ଆଶ୍ରୟ କଲେ ସେହି ଲୀଳା ଭୂମିର ଅଲୌକିକ ସ୍ୱରୂପ ଜାଣିହେବ ।

ନିଧନର ଘର—ପ୍ରାଣୀର ବିବେକ, ସାଧକର ଶରୀରସ୍ଥ ଜ୍ଞାନଶକ୍ତି ।

ନିର୍ଦ୍ଧୂମ ଅଗ୍ନି—ଜ୍ୟୋତିର୍ମୟ ରୂପ ।
ନିର୍ବାତ ମନ୍ଦିର—ପବନ ରହିତ ପୁର, ନିରଞ୍ଜନଙ୍କ ନିବାସ ସ୍ଥଳ ।
ନିର୍ବିକଳ୍ପ—ବିଷୟ ଶୂନ୍ୟ, କାମନା ରହିତ ।
ନିର୍ବେଦ—ବେଦ ଯାହା ଗୁଣଗାନ କରିବାକୁ ଅସମର୍ଥ । କର୍ମଶୂନ୍ୟ ।
ନିରଞ୍ଜନ—ନିର୍ଗୁଣ ଓ ଅନିର୍ବଚନୀୟ ପୁରୁଷ । ବୁଦ୍ଧି ତଥା ଭାଷାତୀତ ପରମ ତତ୍ତ୍ୱ ବ୍ରହ୍ମ । "ନିଷ୍କଳଂ ନିଷ୍କ୍ରିୟଂ ଶାନ୍ତଂ ନିରବଦ୍ୟଂ ନିରଞ୍ଜନମ୍"—ବୋଲି ଉପନିଷଦ ତାଙ୍କୁ ବର୍ଣ୍ଣନା କରିଛି ।
ନିରାମୟ ପୁର—ବ୍ରହ୍ମଙ୍କୁ ଅଲେଖ, ଅଜପା ଓ ଅଭୟପୁର ବାସିନ୍ଦା ବୋଲି କଳ୍ପନା କରାଯାଇଛି । ସେ ଉଜ୍ଜ୍ୱଳତମ ନିରାମୟ ସ୍ୱରୂପ । ତେଣୁ ତାଙ୍କ ଭୁବନ ନିରାମୟ ପୁର ।
ନିଃଶବ୍ଦ—ଶବ୍ଦଗୁଣ ହେଉଛି ଆକାଶ । ଆକାଶର ଊର୍ଦ୍ଧ୍ୱରେ ନିଃଶବ୍ଦ ଅଞ୍ଚଳ ଅବସ୍ଥିତ ।
ନିଶବ୍ଦ ଗୃହ—ଅନ୍ତର୍ମନ୍ଦିର ।
ନିଶ୍ରେଣୀ—ନିଶୁଣି ବା ସିଡ଼ି । ସାଧନ ମାର୍ଗର ପଥ ।
ନିଷ୍ଠାକରି—ଦୃଢ଼ କରି, ନିଶ୍ଚିତ ଭାବେ ।
ନିଷତ୍ତି ଯୋଗ—ସମାଧିର ପରବର୍ତ୍ତୀ ଅବସ୍ଥା ।
ପଞ୍ଜୁରୀ—ପ୍ରାଣାୟମ ଦ୍ୱାରା ଶ୍ୱାସକୁ ଅଧଃ ବା ଊର୍ଦ୍ଧ୍ୱ ମାର୍ଗରେ ରୁଦ୍ଧ କରି ତାଲା ପକାଇବାକୁ ପଞ୍ଜୁରୀ ଆବଦ୍ଧ କରିବା କୁହାଯାଏ ।
ପଚିଶ ନାୟକ—ମାନବର ପଚିଶ ପ୍ରକୃତି ।
ପଚିଶ ଭେଣ୍ଡିଆ—ପଚିଶ ପ୍ରକୃତି ।
ପରଚେ—ଘଟଯୋଗ ସାଧନା । ଶରୀର ସାଧନା କରି ସ୍ଥାନ ଯାକ ପରିଚିତ ହେବା ।
ପରରଜ—ଚକ୍ଷୁ ଓ ନାସା । ଚକ୍ଷୁ ଦୁଇ ଓ ନାସା ଦୁଇ । ଏହା ନ୍ୟାସର

ପରମ—ଅକାର ଉକାର ମିଶ୍ରଣରେ ପରମର ଶରୀର, ଅର୍ଦ୍ଧ ମାତ୍ରା ଓ ବିନ୍ଦୁ ଏଥିରେ ଯୁକ୍ତ ।

ପରମ ପୁରୁଷ—ପରମାତ୍ମା । ଶବ୍ଦବ୍ରହ୍ମ । ପ୍ରଶ୍ୱାସ ବାୟୁ ।

ପରମ ମଠ—ଆଜ୍ଞାଚକ୍ରରେ ଅଧିଷ୍ଠାନ ।

ପଞ୍ଚବୀଜ—ପ୍ଲାଁ, ଧ୍ଲାଁ, ହ୍ଲାଁ, କ୍ଲାଁ, ଶ୍ଲାଁ । ଏହାକୁ ମଧମ ପରମ ବୀଜ, ଧାମବୀଜ, ପରାବୀଜ, କାମବୀଜ ଓ ରମାବୀଜ ଭାବେ ଗ୍ରହଣ କରାଯାଏ ।

ପଞ୍ଚମାତ୍ରା—ଆ ଇ ଉ ଏ ଅଂ ହେଲେ ପଞ୍ଚମାତ୍ରା ।

ପଞ୍ଚ ଆତ୍ମା—ପରମ, ଜୀବ, ତତ୍ତ୍ୱ, ଧ୍ୟାନ ଓ ଜ୍ଞାନ ଆତ୍ମା ।

ପଞ୍ଚ ତତ୍ତ୍ୱ—ରୂପ, ନାମ, ବୁଦ୍ଧି, ବିବେକ ଓ ଆଶ୍ରୟ ।

ପଞ୍ଚ ନିତ୍ୟବସ୍ତୁ—କାଳ, କର୍ମ, ମାୟା, ଜୀବ ଓ ଈଶ୍ୱର । ଏହି ପଞ୍ଚବସ୍ତୁ ନିତ୍ୟ ।

ପଞ୍ଚ ଭୂତ—କ୍ଷିତି, ଅପ, ତେଜ, ବ୍ୟୋମ ଓ ମରୁତ ।

ପଞ୍ଚ ପବନ ପଞ୍ଚବିନ୍ଦୁ—ପ୍ରାଣ, ଅପାନ, ସମାନ, ଦାନ ଓ ବ୍ୟାନ ।

ପଞ୍ଚ ଇନ୍ଦ୍ରିୟ—ଚକ୍ଷୁ, କର୍ଣ୍ଣ, ନାସା, ଚର୍ମ ଓ ଜିହ୍ୱା ।

ପଞ୍ଚାତ୍ମିକ—କ୍ଷିତି, ଅପ, ତେଜ, ଆକାଶ ଓ ପବନ ।

ପଞ୍ଚାଶ ଦଳ—ଲଲାଟ ଚକ୍ରର ନିମ୍ନଦେଶ ।

ପଞ୍ଚାଶ ବାଉରୀ—ପଚାଶ ଅକ୍ଷର ।

ପଞ୍ଚାଙ୍ଗ—ଜୀବ ମୋକ୍ଷର ପାଞ୍ଚଗୋଟି ଅଙ୍ଗ । ଯଥା—ଜପ, ସ୍ନାନ, ତର୍ପଣ, ହୋମ ଓ ଅତିଥି ସେବା ।

ପଦ୍ମବନ—ଆତ୍ମା ପରମାତ୍ମାଙ୍କ ମିଳନ ସ୍ଥଳ, ନେମାଳ ।

ପରାବୀଜ—ହ୍ଲାଁ, ହଳଧର ।

ପାଣି—ଚକ୍ର । ବାମ ନାସାର ବାୟୁ ।

ପାଞ୍ଚମନ—ମନ, ଅମନ, ସୁମନ, କୁମନ ଓ ବିମନ ।

ପାଞ୍ଚ ପ୍ରଧାନ—ପଞ୍ଚ ମନ ।

ପାଞ୍ଚ ସଙ୍ଗାତ—ମନ (କ୍ଷିତି), ସୁମନ (ଅପ), କୁମନ (ତେଜ), ବିମନ (ବାୟୁ), ଅମନ (ଆକାଶ) ।

ପ୍ରାଣ—ହୃଦୟ ବାୟୁ ।

ପିଙ୍ଗଳା—ବାମପୁଡ଼ା ବାୟୁ । ପିଙ୍ଗଳା ନାଡ଼ି, ଯମୁନା, ତ୍ରିବେଣୀ ମଧ୍ୟରୁ ଅନ୍ୟତମ ।

ପ୍ଲାଂ—ପରମ ଗୁରୁ ।

ପୁରୁଷ—'ପୁରତି' ଅର୍ଥାତ୍ 'ଅଗ୍ରେ ଗଚ୍ଛତି' ଅଗ୍ରଗାମୀ ।

ପୂରକ—ପ୍ରାଣାୟାମ ସାଧନାରେ ବାହାରରୁ ବାୟୁ ଗ୍ରହଣ କରିବା ବିଧାନ ।

ପ୍ରଣବ—ଓଁକାର । ଅକାର, ଉକାର, ମକାର ଓ ଅର୍ଦ୍ଧଚନ୍ଦ୍ରର ସମାହାର । ଏହାର ଚାରିପଟେ ରାମ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଓ କୃଷ୍ଣ ବ୍ୟୁହ ବର୍ତ୍ତମାନ ।

ପ୍ରଣବ ଦ୍ୱାରେ—ମାତୃ ଗର୍ଭରେ ।

ପ୍ରଚଣ୍ଡ—ଚତୁର୍ଭୁଜ ହୋଇଥିବା କାକ, ଚୈତନ୍ୟ ।

ପ୍ରେମରୂପା—ପ୍ଲାଂ, ବିନ୍ଦୁ ବ୍ରହ୍ମ ।

ଫୁଟି—କ୍ଲାନ୍ତ ହୋଇ ।

ଫୁଙ୍କାବନ୍ଧ—ତ୍ରିକୂଟ ସନ୍ଧି ।

ବକ ଓ ମୀନ—ଆତ୍ମା ଓ ଶରୀରସ୍ଥ ପ୍ରାଣ ପବନ ।

ବଜ୍ରକୀଳା—ବଜ୍ର କିଳିଣୀ । ଫୁଙ୍କାବନ୍ଧରେ ଯେଉଁ ଦ୍ୱାର ଅଛି, ସେଠି ମହାମାୟା ଚିର ଜାଗ୍ରତ ପ୍ରହରୀ । ସେ ଦ୍ୱାର ବଜ୍ରକୀଳା ଦ୍ୱାରା ରୁଦ୍ଧ ହୋଇଛି ।

ବତିଶ କଳା—ଚନ୍ଦ୍ର କଳା ୧୬ + ସୂର୍ଯ୍ୟ କଳା ୧୨ + ଉର୍ମି + ଧୂର୍ମି + ଜ୍ୟୋତି + ଜ୍ୱାଳା = ୩୨ କଳା ।

ବରୁଣ ଆଳ—ସମୁଦ୍ର, ଶରୀର ।

ବଙ୍କୁନାଳ—ଶରୀର ମଧ୍ୟରେ ଥିବା ଇଡ଼ା, ପିଙ୍ଗଳା ଓ ସୁଷୁମ୍ନାର ସନ୍ଧି ସ୍ଥଳରେ ବଙ୍କୁନାଳ ଅବସ୍ଥିତ । ଏହି ସ୍ଥାନରୁ ବ୍ରହ୍ମ ନିରଞ୍ଜନଙ୍କର କରୁଣା ଧାରା ପ୍ରବାହିତ ହୁଏ ।

ବ୍ରହ୍ମ—ଅଚ୍ୟୁତାନନ୍ଦଙ୍କ ମତରେ ପରମ ଉପରେ ବ୍ରହ୍ମ ।

ବାରଜଣ—ବାର ଆଙ୍ଗୁଳ ।

ବାରକୁ ବାର—୧୨ ଆଙ୍ଗୁଳ ନିଶ୍ୱାସ + ୧୨ ଆଙ୍ଗୁଳ ପ୍ରଶ୍ୱାସ—ଏମନ୍ତ ଚବିଶି ଆଙ୍ଗୁଳ କ୍ଷେତ୍ର, ଲୀଳାଭୂମି ।

ବହନ୍ତା ନଦୀ—ପ୍ରଶ୍ୱାସ ।

ବ୍ୟାଘ୍ର—ଜ୍ଞାନଶକ୍ତି ।

ବ୍ୟାନ—ବ୍ରହ୍ମ ରନ୍ଧ୍ରର ବାୟୁ ।

ବିମନ—ପବନ ।

ବିନ୍ଦୁ—ବୀର୍ଯ୍ୟ ।

ବିଷମ ଅର୍ଗଳି—ବ୍ରହ୍ମ ରନ୍ଧ୍ର ।

ବେଙ୍ଗ ଗିଳେ ହାତୀ—ଜୀବ ପରମର ସତ୍ତାକୁ ଭୁଲିଯାଏ ।

ବୋଇତ ସିନ୍ଧୁ—'ବୋଇତ'ର ଭାବାର୍ଥ ଶରୀର ଏବଂ 'ସିନ୍ଧୁ' ହେଉଛି ବ୍ରହ୍ମ ।

ଭଗାରୀ—ଷଡ଼ ରିପୁ ।

ଭ୍ରମର—ମନ ।

ଭ୍ରମର ଗୁମ୍ଫା—ବ୍ରହ୍ମ ରନ୍ଧ୍ର । ଭ୍ରମର ଗୁମ୍ଫାରେ ପହଞ୍ଚିଲେ ଜୀବର ଅହଂଭାବ ନଷ୍ଟ ହୋଇଯାଏ ।

ଭାଇବୋହୂ—ପ୍ରଶ୍ୱାସ ପବନ ।

ଭାରତ—ପରମ ସାଧନ ଭୂଇଁ, କପାଳ ।

ମ' ଅକ୍ଷର—ଉପାଧିଧାରୀ ଆତ୍ମା, ଜୀବ ବା ରୂପ, ସ୍ୱରୂପ, ସ୍ୱର୍ଶ ତତ୍ତ୍ୱ ଜ୍ଞାପକ ଅକ୍ଷର ମନ୍ତ୍ର ।

ମନ୍ତ୍ରରାଜ—ଗୋପୀ ଜନ ବଲ୍ଲଭାୟ ସ୍ୱାହାଃ—ଦଶ ଅକ୍ଷର ।
ମଞ୍ଜାରୀ ମୂଷା—ବିବେକ ଓ ମନ । ଜ୍ଞାନ ଓ ଅଜ୍ଞାନ ।
ମନ—ପୃଥିବୀ ।
ମନୁଦ୍ର ପୁର—ମନର ସାମ୍ରାଜ୍ୟ ।
ମତ୍ତ ହସ୍ତୀ—ମନ ।
ମାତାଲ ହାଥୀ—ମନ ।
ମତ୍ତାଙ୍ଗେ—ତନ୍ତ୍ର ସାଧନା ଅନୁସାରେ ମଦରେ ନ ମିଳାଇ ।
ମରା ଶବଦେ ମିଳାଇ—ପରମରେ ଜୀବକୁ ଲୀନ କରି । ରୂପକୁ ଅରୂପରେ ମିଳାଇ ।
ମଶା—ଲଗାମହୀନ ମନ ।
ମହାମାଈ—ମହାମାୟୀ, ଅର୍ଦ୍ଧମାତ୍ରା, ଜ୍ୟୋତିର୍ମୟୀ ।
ମହାଶୂନ୍ୟ—ମହାକାଶ, ନିର୍ବାତ, ଭୂମି, ତାଳୁ ।
ମହାମନ୍ତ୍ର—ଏହା ଆଠ ଅକ୍ଷର ବିଶିଷ୍ଟ । କିନ୍ତୁ ତା'ର ଗୋଟିଏ ପଦ ଷୋଳ ଅକ୍ଷର ଯୁକ୍ତ । ସମ୍ପୂର୍ଣ୍ଣ ମହାମନ୍ତ୍ର ହେଉଛି ବତିଶ ଅକ୍ଷର । ପୁଣି ସ୍ୱର ଓ ବ୍ୟଞ୍ଜନ ଭେଦର ଏହା ଚଉଷଠୀ ଅକ୍ଷର ବିଶିଷ୍ଟ ।
ମାତା—ଯୋଗମାୟା ।
ମାହୁନ୍ତ—ଚୈତନ୍ୟ ।
ମୀନ—ପ୍ରାଣ ପବନ ।
ମୁଦ୍ରାପାଡ଼ି—ରୋଧ କରି ।
ମୂଳାଧାର—ମେରୁଦଣ୍ଡ ମୂଳରେ ଏହା ଅବସ୍ଥିତ ।
ମୃଣାଳ ସୂତ୍ର—ଅତି ସୂକ୍ଷ୍ମ ମାର୍ଗ ।
ମଞ୍ଜରୀ—ସେବାର ପ୍ରକାର ଭେଦରେ ଗୋପୀମାନେ ଦୁଇ ଭାଗରେ ବିଭକ୍ତ । ଯଥା—ସଖୀ ଓ ମଞ୍ଜରୀ । ଶ୍ରୀରାଧାଙ୍କ ଭଳି ଯେଉଁମାନେ ସମଜାତୀୟ ସେବା କରି ଶ୍ରୀକୃଷ୍ଣଙ୍କ ପ୍ରୀତିବିଧାନ କରନ୍ତି,

ସେମାନେ ହେଲେ ସଖୀ । ଯେପରିକି ଲଳିତା, ବିଶାଖା ପ୍ରଭୃତି । ଏମାନେ ସ୍ୱରୂପା ଶକ୍ତି । ସଖୀମାନେ ନିତ୍ୟସିଦ୍ଧା । ଯେଉଁମାନେ ନିଜେ କୃଷ୍ଣ ସେବା ନ କରି ରାଧାକୃଷ୍ଣ ମିଳନରେ ଅନୁକୂଳ ଭାବ ସମ୍ପାଦନ କରନ୍ତି, ସେମାନେ ହେଲେ ମଞ୍ଜରୀ । ଏମାନେ ଶ୍ରୀରାଧାଙ୍କ କିଙ୍କରୀ ଓ ସେବାକାରିଣୀ । ମଞ୍ଜରୀଙ୍କ ସେବା ଅନୁଗତ୍ୟମୟ; ଏମାନେ ସାଧନସିଦ୍ଧା ଗୋପୀ ।

ମେରୁଦ୍ୱାର—ତ୍ରିକୂଟ ନିକଟସ୍ଥ ମେରୁଗିରିର ସୂକ୍ଷ୍ମଦ୍ୱାର ।

ମେରୁ—ତ୍ରିକୂଟସ୍ଥ ମେରୁଗିରି ।

ମୋଘ—ବ୍ୟର୍ଥ ।

ଅମୋଘ—ଅବ୍ୟର୍ଥ ।

ଯଜୁଃବେଦ—ମୁଖ ।

ଯାଉଁଳି କବାଟ—ଲୋଭ ଓ ଅହଙ୍କାର, ରାମ ଓ କୃଷ୍ଣ ନାମ ଦ୍ୱୟ ।

ଯାଜପୁର—ନାଭି ଗଙ୍ଗା କ୍ଷେତ୍ର । ନାମାନ୍ତର 'ଯଜ୍ଞପୁର' ବା 'ଯଯାତିପୁର' ।

ଯୁଗଧର୍ମ—ଯୁଗ ଅନୁରୂପ କର୍ମ; ସତ୍ୟ ଯୁଗରେ ଧ୍ୟାନ; ତ୍ରେତା ଯୁଗରେ ଯଜ୍ଞ, ଦ୍ୱାପର ଯୁଗରେ ପରିଚର୍ଯ୍ୟା ଓ କଳିଯୁଗରେ ନାମ ସଂକୀର୍ତ୍ତନ ।

ଯୋଗ ସପ୍ତାଙ୍ଗ—ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧ୍ୟାନ ଓ ଧାରଣା ।

ଯୋଗମାୟା—'ଯୋଗେନ ଚିତ୍ତବୃତ୍ତି ନିରୋଧେନ ଯା ମାୟା ଅଚିନ୍ତ୍ୟ ଶକ୍ତି' । ଚିତ୍ତବୃତ୍ତି ନିରୋଧ ରୂପୀ ଯୋଗ କରି ଯିଏ ଅଚିନ୍ତ୍ୟ ଶକ୍ତିକୁ ଉଦ୍‌ବୁଦ୍ଧ କରେ, ସେ ଯୋଗମାୟା ।

ର—ଚକ୍ଷୁ, ଅଗ୍ନି ତତ୍ତ୍ୱ ଏବଂ ରକ୍ତ ନିୟନ୍ତ୍ରଣ ଶକ୍ତି ଜ୍ଞାପକ ।

ରଜ—ନାରୀମାନେ ରଜଗୁଣ ପ୍ରଧାନ । ସାଧକ ସେ ଦିଗରୁ ସତର୍କତା ଅବଲମ୍ବନ କରିବା ଉଚିତ ।

ରଙ୍ଗା ପରଙ୍ଗା—ମନ ରାଜା, ପ୍ରକୃତି ପରଜା ।

ରମାବୀଜ—ସୁଭଦ୍ରା, ଶ୍ରୀଂ ବୀଜ ମନ୍ତ୍ର ।

ରା—ଅରୂପ, ଅଣାକାର ।

ରାକାର—ଶବ୍ଦ ବ୍ରହ୍ମ ।

ରାଜଦଣ୍ଡ ପଥ—ବ୍ରହ୍ମ ରନ୍ଧ୍ରକୁ ବାଟ ।

ରେଚକ—ପ୍ରାଣାୟାମ ସାଧନାରେ ବାୟୁ ତ୍ୟାଗ କରିବାର ନିୟମ ।

ଲୟ—ଧ୍ୟାନ ନିଷ୍ଠା ।

ଲୟାଙ୍ଗ—ମନ ଯେଉଁଠାରେ ଲୟ ହୁଏ, ତାହା ଆତ୍ମାର ସ୍ଥାନ । ସେଠାରେ ବ୍ରହ୍ମ ପ୍ରବର୍ତ୍ତିତ ହେଉଥିବାରୁ ତାହା ଆକାଶ ରୂପ । ତାହା ପରମାତ୍ମାର ଘର ।

ଲୀଳା—ରମଣୀୟ ବେଶ ଓ କ୍ରିୟାଦ୍ୱାରା ପ୍ରିୟର ଅନୁକରଣ ।

ଶଶବଦ—ମୁଖ ଓ କର୍ଣ୍ଣ, ମୁଖ ଦୁଇ ଓ କର୍ଣ୍ଣ ଦୁଇ ।

ଶକ୍ତିତ୍ରୟ—ଅନ୍ତରଙ୍ଗା ଚିଦ୍‌ଶକ୍ତି, ବହିରଙ୍ଗା ମାୟାଶକ୍ତି ଓ ତଟସ୍ଥା ଜୀବଶକ୍ତି । ଏହିରୂପେ ତିନି ଶକ୍ତି ।

ଶ୍ୟାମଳା ବକ—ବକ 'ମନ' ଅର୍ଥରେ ଏବଂ ଶ୍ୟାମଳା 'ବିବେକ' ଅର୍ଥରେ ବ୍ୟବହୃତ । ପୁଣି ତାହା ପରମାତ୍ମା ଓ ଆତ୍ମା ।

ଶିଖର—ତ୍ରିକୂଟସ୍ଥ ଗିରି ଶିଖର ।

ଶିଳା—ଶାଳଗ୍ରାମ, ବିବେକହୀନତା ।

ଶିଶୁଶବଦ—ବିନ୍ଦୁ ।

ଶ୍ରୀଂ—ସୁଭଦ୍ରା, ରାମ ।

ଶୁଆ—ଜୀବ ।

ଶୁକ୍ଳାମ୍ବର—ଶୁଦ୍ଧ ସତ୍ତ୍ୱମୟ, ଧଳା ଲୁଗା, ଶୂନ୍ୟ ବ୍ରହ୍ମ ।

ଶ୍ୱେତ ତିଳକ—ଅର୍ଦ୍ଧମାତ୍ରା ।

ଶ୍ୱେତ ବର୍ଣ୍ଣ ଫୁଲ—ତତ୍ତ୍ୱ ଆତ୍ମା ।

ଷଡ଼ଚକ୍ର—ସୁଷୁମ୍ନା ନାଡ଼ିର ମଧ୍ୟବର୍ତ୍ତୀ ଦ୍ୱି ଦଳ ଏବଂ ଚତୁର୍ଦ୍ଦଳ ପଦ୍ମାକାର ଚକ୍ର । ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧାଖ୍ୟ ଓ ଆଜ୍ଞାଚକ୍ରକୁ ନେଇ ଷଡ଼ଚକ୍ର ପରିକଳ୍ପିତ ।

ଷଡ଼ମନ୍ତ୍ର—(କ) ଷଡ଼ଚକ୍ରରେ ବ୍ରହ୍ମ ସାଧନାର ପ୍ରଣାଳୀ, (ଖ) କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ ଆଦି ଷଡ଼ରିପୁକୁ ବଶ କରିବାର ପନ୍ଥା । (ଗ) 'ହରେ ରାମ କୃଷ୍ଣ' ଷଡ଼ ଅକ୍ଷର ମନ୍ତ୍ରର ବୈଶିଷ୍ଟ୍ୟ ଜାଣିବା ।

ଷୋଳ କଳା—ପଞ୍ଚ ଜ୍ଞାନେନ୍ଦ୍ରିୟ (ଚକ୍ଷୁ, କର୍ଣ୍ଣ, ନାସା, ଜିହ୍ୱା ଓ ଚର୍ମ) ପଞ୍ଚ କର୍ମେନ୍ଦ୍ରିୟ (ବାକ୍, ପାଣି, ପାଦ, ପାୟୁ ଓ ପଦସ୍ଥ), ମନ ଏବଂ ପଞ୍ଚ ମହାଭୂତ, (କ୍ଷିତି, ଆପ୍, ତେଜ, ମରୁତ୍ ଓ ବ୍ୟୋମ) ।

ଷଡ଼ମୁଖୀ ଗାଈ—ଷଡ଼ ଚକ୍ରଯୁକ୍ତ ଶରୀର ।

ଷୋଳ ଘାଟ—"ହରେ ରାମ ହରେ ରାମ ରାମ ରାମ ହରେ ହରେ"—ଏଇ ଷୋଳ ଅକ୍ଷରଯୁକ୍ତ ମନ୍ତ୍ରକୁ ଘାଟ ରୂପେ ପରିକଳ୍ପନା କରାଯାଇଛି ।

ଷୋଳ ଡମ୍ବରୁ—କଣ୍ଠ ତଟରେ ଅବସ୍ଥିତ ବିଶୁଦ୍ଧାଖ୍ୟ ଚକ୍ର । ଏହା ଷୋଡ଼ଶ ଦଳଯୁକ୍ତ । ମେରୁ ମଜ୍ଜା, ଷୋଡ଼ଶ ଗ୍ରନ୍ଥିଯୁକ୍ତ ଶରୀର ।

ଷୋଳ ଫେର—ଷୋଳ ଦଳ ବିଶିଷ୍ଟ କମଳ ବିଶୁଦ୍ଧାଖ୍ୟ ଚକ୍ର ।

ସମାନ—ନାଭି ବାୟୁ ।

ସମାଧି—ଯୋଗରେ ଚିତ୍ତବୃତ୍ତିକୁ ନିରୋଧ କରିବାର ଅବସ୍ଥା ।

ସରସ୍ୱତୀ—ସୁଷୁମ୍ନା ନାଡ଼ି । ତ୍ରିବେଣୀର ଅନ୍ୟତମ ଅଂଶ ।

ସପ୍ତମାତ୍ରା—ଅ, ଆ, ଇ, ଉ, ଏ, ଓ, ଅଂ—ଏହି ସାତୋଟି ମାତ୍ରା ।

ସର୍ପ ମଣ୍ଡୁକୀ—ଅଜ୍ଞାନ ଶକ୍ତିକୁ ଜ୍ଞାନଶକ୍ତି ଅଧୀନ କରିବାକୁ ଆଗ୍ରହୀ ।

ସରୋବର—ତ୍ରିକୂଟରେ ଅବସ୍ଥିତ । କରୁଣାର ଧାରା ।

ସ୍ୱବୃତ୍ତି—ଜୀବନର ମୂଳତତ୍ତ୍ୱ, ବ୍ରହ୍ମ ।

ସହସ୍ରାର—ସହସ୍ର ଅର ବା ଦଳ ଯାହାର ।

ସ୍ୱର୍ଣ୍ଣ ପଞ୍ଜୁରୀ—ସାଧକର ଶରୀର । ମାନବର ଲୋଭନୀୟ ଦେହ ।

ସାତଶ ବାସ୍ତରୀ ଗୁଅ—ଆମ ଶରୀରରେ ସାତ ଶହ ବାସ୍ତରି ଖଣ୍ଡ ହାଡ଼ ଅଛି । ଏହାକୁ ମାନବ ଶରୀର ରୂପକ ଘରର ଗୁଅ କଳ୍ପନା କରାଯାଇଛି ।

ସାମବେଦ—ନାସିକା ।

ସାହୁ ଖାତକ—ବିବେକ ଓ ମନ । ଜ୍ଞାନ ଓ ଅଜ୍ଞାନ ।

ସିଦ୍ଧକଳ୍ପ—ସିଦ୍ଧଦେହୀ ।

ସିଦ୍ଧାଙ୍ଗ—ସିଦ୍ଧ ପୁରୁଷ ହେବାର ବାହ୍ୟ ପ୍ରକାଶ ।

ସିଦ୍ଧିରସ୍ତୁ—'ସି' ମଧରେ ମହାମାୟା ଜ୍ୟୋତି, 'ଦ୍ଧି' ମଧରେ ବ୍ରହ୍ମ ଯଦୁପତି, 'ର' ଅକ୍ଷରରେ ରମିଲେ ଶଙ୍କର ଓ 'ସ୍ତୁ'ରେ ବ୍ରହ୍ମ ଏକାକ୍ଷର ମନ୍ତ୍ର ।

ସୁନିଆଁ—ଗଜପତି ରାଜାଙ୍କ ବର୍ଷାରମ୍ଭ ଦିବସ । ଏହି ଦିନ ରାଜଭେଟି ଦିଆଯାଏ ।

ସୁମନ—ଜଳ ।

ସାୟୁଜ୍ୟ—ପରମେଶ୍ୱର ଠାରେ ଲୟ ପ୍ରାପ୍ତି । ସାୟୁଜ୍ୟ ମୁକ୍ତି ।

ସାରୂପ୍ୟ—ସମାନ ରୂପ ପ୍ରାପ୍ତି । ସାରୂପ୍ୟ ମୁକ୍ତି ।

ସାଲୋକ୍ୟ—ସମାନ ଲୋକ ପ୍ରାପ୍ତି ସା ଲୋକ୍ୟ ମୁକ୍ତି ।

ସିଦ୍ଧଦେହୀ—ପ୍ରାଣୀର ପ୍ରକୃତ ଜଡ଼ ଦେହ ଭଗବନାଙ୍କ ସାକ୍ଷାତ ସେବାରେ ଲାଗିପାରେ ନାହିଁ । ସାଧନାରେ ସିଦ୍ଧି ଲାଭ କରି ଈଶ୍ୱର ସେବାରେ ବିନିଯୁକ୍ତ ହେବା ହିଁ ସିଦ୍ଧଦେହୀ ।

ସୁଷୁମ୍ନା—ଶରୀରର ପୃଷ୍ଠଭାଗରେ ମେରୁଦଣ୍ଡ ଭିତରେ ଥିବା ଏକ ପ୍ରମୁଖ ନାଡ଼ି । ସୁଷୁମ୍ନା ସର୍ବଦା ସୁପ୍ତାବସ୍ଥାରେ ଥାଏ ।

ସୂର୍ଯ୍ୟ—ଦକ୍ଷିଣ ପୁଡ଼ା ବାୟୁ ।

ସୂର୍ଯ୍ୟଅଙ୍ଗ—ଜ୍ୟୋତି ମଣ୍ଡଳ ।

ସ୍ଥାବର—ସ୍ଥିତିଶୀଳ, ବୃକ୍ଷାଦି ।

ହରିଣୀ—ଶରୀର ସାଧକର ଦେହ ।

ହରିବା—ଆଉ କେଉଁଆଡ଼େ ଯିବାକୁ ନ ଦେବା ।

ହରି—ସର୍ବ ଅମଙ୍ଗଳ ହରଣକାରୀ । ପ୍ରେମଦାନ ଦ୍ୱାରା ମନୋହରଣକାରୀ ।

ହଂସ—ସୋଽହଂ । ପରମ ବ୍ରହ୍ମ । ଜୀବ ପରମ । 'ହ' ହେଉଛନ୍ତି ଶିବ ଏବଂ 'ସ' ହେଉଛନ୍ତି ଶକ୍ତି । ଓଁକାର ହଂସର ଚଞ୍ଚୁ । ଆଗମ ନିଗମ ତାହାର ଦୁଇ ପାଦ ।

ହଂସା—ନିଃଶ୍ୱାସ ଓ ପ୍ରଶ୍ୱାସ ।

ହରେରାମ—ରାଧାରମଣ ।

ହ୍ରଦ—ଚେତନା, ଶରୀର ସତ୍ତା ।

ହ୍ରୀଂ—ହରେ, ବଳଭଦ୍ର ।

ହେତୁପଥ—ଜ୍ଞାନ ମାର୍ଗ ।

ହେତୁ ଶାଙ୍କୋଳି—ଜ୍ଞାନକୁ ଅଜ୍ଞାନ ଆଡ଼କୁ ନ ଯିବା ଲାଗି ବାନ୍ଧି ରଖିବା ।

ହେମଗିରି—ମେରୁଗିରି । ଏହି ଠାବରୁ ବ୍ରହ୍ମ ନିରଞ୍ଜନଙ୍କର କରୁଣାର ଧାରା ପ୍ରବାହିତ ।

## 'ଓଲଟ ବୃକ୍ଷେ ଖେଳୁଛି ଲୋଟଣି ପାରା'— ପ୍ରସଙ୍ଗ କ୍ରମରେ କିଛି ତଥ୍ୟ

(୧) ଏବେ ସବୁ ଓଲଟ ହେଉଛି । କଥା ଓଲଟୁଛି, ଭାଷା ଓଲଟୁଛି ଏବଂ ଲୋକଙ୍କର ଚାଲିଚଳନ ଓ ବେଶଭୂଷା ମଧ ଓଲଟୁଛି । ଏଇମିତି ସବୁ ଓଲଟି ଯିବ ବୋଲି ଆଜିକୁ ବହୁ ବର୍ଷ ପୂର୍ବରୁ ଅର୍ଥାତ୍ ୧୫୩୭ ମସିହାବେଳେ ପ୍ରଧାନ ଶିଷ୍ୟ ରାମଦାସଙ୍କୁ ଠାର ଗାର ଦେଇ କହି ଦିଆଯାଇଥିଲା ।

'ଦେବତା ମନ୍ଦିରରେ ପୂର୍ବ ଦେବସଭା ହେଉଥିଲା' ; କିନ୍ତୁ ଏବେ କ'ଣ ହେଉଛି ?

—ଏବେ ଚାଲୁଛି ଦେବ ମନ୍ଦିରରେ ରାଜନୀତି, କୂଟନୀତି, ଚୋରିନୀତି, ଠକ ନୀତି, ଭଣ୍ଡାମୀ ନୀତି ଓ ଶେଷକୁ ଧର୍ଷଣ ନୀତି ଅନ୍ୟ ଅର୍ଥରେ ଯୌନ ବ୍ୟଭିଚାର । ଶିବ ମନ୍ଦିରରେ ପୂଜକ ହରିଜନ ମହିଳାଙ୍କୁ ଶିବ ଲିଙ୍ଗଙ୍କ ପାଖରେ ପୂଜାପାଠ କରିବା ବାହାନାରେ ଅତ୍ୟାଚାର କଲା, ଏକଥା ପତ୍ରପତ୍ରିକାରେ ପ୍ରକାଶ ପାଇଲା । ଦୋଷୀକୁ ଶିବ ତ ଦଣ୍ଡ ଦେଲେ ନାହିଁ, ତେବେ ଆଇନ୍ କାନୁନ୍ ବା କ'ଣ କରିପାରିବ ତା' ପାଇଁ ? ଏବେ ଦେବୀଦେବତା ତ ମନ୍ଦିର ପରିତ୍ୟାଗକରି ରହୁଛନ୍ତି ଶୂନ୍ୟରେ, ତେବେ ମନ୍ଦିରରେ ଅନ୍ୟାୟ କାର୍ଯ୍ୟ ହେଲେ ଦଣ୍ଡ ଦେବ କିଏ ?

—ପୁଣି ଖବରକାଗଜରେ ପ୍ରକାଶ ପାଇଛି, ଓଡ଼ିଶାର ଏକ ଆଶ୍ରମ ପରିସରରେ ଜଣେ ଯୁବକଙ୍କୁ ହତ୍ୟା କରାଯାଇ, କିଏ ବା କହିଛି ବଳି ଦିଆଯାଇ ନଈରେ ଭସେଇ ଦିଆଗଲା । ତେବେ ଦୋଷୀ କିଏ ଏବଂ ଦୋଷୀକୁ ଆଜିକାର ଆଇନ୍ କାନୁନ୍ କି ପ୍ରକାର ଦଣ୍ଡ ଦେଲା ? କେହି ତ ଜାଣିପାରିଲେ ନାହିଁ । ଏଇତ ମଧ୍ୟ ଓଲଟ ହୋଇଛି ।

(୨) କେନ୍ଦ୍ରାପଡ଼ାର ଶ୍ରୀବଳଦେବ ଜୀଉଙ୍କ ତୁଳସୀ କ୍ଷେତ୍ର ପଞ୍ଚକୋଶୀ ମଧ୍ୟରେ ଏବେ ପତ୍ରପତ୍ରିକାରେ ପ୍ରକାଶ ପାଇଛି 'ସେକ୍ସ ସ୍କାଣ୍ଡାଲ୍' ଯାହାର ଧନ ଅଛି ପ୍ରତିପତ୍ତି ଅଛି, ସେ ଧରାକୁ ସରା ମଣି ନିରୀହ ତଥା ଦରିଦ୍ର ପରିବାରର ଝିଅ-ବୋହୂମାନଙ୍କୁ ଟଙ୍କା ଦେଇ, ପ୍ରଲୋଭନ ଦେଖାଇ, ଚାକିରି କରିଦେବୁ ଏବଂ ଭଲ ଜାଗାରେ ବିବାହ କରେଇଦେବୁ ବା ତାଙ୍କୁ ନିଜର ପତ୍ନୀର ସମ୍ମାନ ଦେବୁ କହି ସବୁ ଓଲଟ କଥା ହୋଇଛି । ଯା' ପାଇଁ ବା ଆଇନ୍ କାନୁନ୍ କ'ଣ କରୁଛି ବା କରିବ କିଛି ଜଣାପଡ଼େ ନାହିଁ । ଏଇମିତି କଥା ସବୁ କଳିଯୁଗ ଶେଷ ବେଳକୁ ହେଉଥିବ ବୋଲି, ଦ୍ୱାଦଶ ଗୋପାଳ ଶିଷ୍ୟଙ୍କୁ ମଧ୍ୟ ଶୁଣେଇ ଦିଆଯାଇଥିଲା ।

(ଗ) ମାଳିକାରେ କୁହାଯାଇଥିଲା—କିଛି ଠକ ଭଣ୍ଡ ବାହାରି ନିରୀହ ଲୋକଙ୍କୁ ଠକିବେ, କିଏ କହିବ ମୁଁ ଜଣେ ଦେବୀସାଧକ ତ କିଏ କହିବ ମୁଁ ଜଣେ ଈଶ୍ୱରଙ୍କ ଦୂତ । ତୁମର ଏଇୟା କରିଦେବି, ତୁମର ସେଇୟା କରିଦେବି । ମନ୍ତ୍ର କରି ଫୁଙ୍କି ଦେଲେ ରୋଗ ଭଲ ହୋଇଯିବ ତ ମନ୍ତ୍ର କରି ପିତଳକୁ ସୁନାରେ ପରିଣତ କରିଦେବି । ସେଇ ସମୟଟି ହୋଇଥିବ ଯୁଗର ଅନ୍ତିମ ମୁହୂର୍ତ୍ତ । ଦେବାଦେବୀ ନାଁ କହି ପରସ୍ପରକୁ ଧର୍ମ ବିଶ୍ୱାସ ଦେଖେଇ ଠକିବେ ।

—୧୯୯୭ରେ ଏଇଭଳିଆ କଥା ପୁରୀ ଜିଲ୍ଲାରେ ଘଟିଛି, ଯାହା ଲୋକେ ସମ୍ବାଦପତ୍ରରୁ ପଢ଼ିବାକୁ ପାଇଛନ୍ତି । ଦୁଇଜଣ ନିଜକୁ ତାନ୍ତ୍ରିକ ବୋଲି ପରିଚୟ ଦେଇ ଶ୍ମଶାନରେ ଦେବୀ ପୂଜା କରିବା ଆଳରେ କୌଣସି ଏକ ରୋଗରେ ପୀଡ଼ିତା ମହିଳାଟିକୁ ମଦ ପିଆଇ ଦେଇ ଯୌନ ଯାତନା ବା ଧର୍ଷଣ କରିବାକୁ ଉଦ୍ୟତ ହୁଅନ୍ତେ; ମହିଳାଟିର ସ୍ୱାମୀ ଓ ଅନ୍ୟମାନେ କାବୁ କରି ନେଇ ପୋଲିସ୍ ଜିମା ଦେଇଥିଲେ ।

—ପୁଣି ମଧ୍ୟ କେତେକ ଜାଗାରେ, ଠକ ଓ ଭଣ୍ଡ ବିଭିନ୍ନ ବେଶରେ ଅର୍ଥାତ୍ ମାଳା ତିଳକ ଚନ୍ଦନ ବୋଳିହୋଇ, ସରଳ ଲୋକ ଚିହ୍ନି, ପିତଳକୁ ମଧ୍ୟ ସୁନା କରିଦେବୁ କହି; ଯନ୍ତ୍ର ମନ୍ତ୍ର ତନ୍ତ୍ରର ମିଛି ମିଛିକା ପ୍ରୟୋଗ ଦେଖାଇ; ଧନ ସମ୍ପତ୍ତି ଲୁଟ୍ କରି ନେଇଥିବା ଖବର, ଥାନା ରେକର୍ଡ଼ରୁ ସଂଗ୍ରହ କରାଯାଇ ଖବରକାଗଜରେ ଛାପା ହୋଇଯାଉଛି ।

—ପ୍ରତିଦିନ ଏଇ ପୃଥିବୀ ପୃଷ୍ଠରେ, ନାନା ପ୍ରକାରର ଠକାମୀରେ ସରଳ, ନିରୀହ ଜନତା ପଡ଼ି ତ୍ରାହି ତ୍ରାହି ଡାକ ଛାଡୁଛନ୍ତି । କୋର୍ଟ କଚେରୀ ଗଲେ ନ୍ୟାୟ ମିଳୁନି, ଥାନାରେ ଏତଲା ଦେଲେ ଉଚ୍ଚ କର୍ତ୍ତୃପକ୍ଷ ଶୁଣ

ନାହାନ୍ତି । ଗୁଣ୍ଡା ବଦମାସୀଙ୍କର ରାଜ୍ ଚାଲିଛି । ଶାସନ ସ୍ତରରେ ଥିବା ମନ୍ତ୍ରୀ, ଏମ୍.ଏଲ୍.ଏଙ୍କ ନାଁରେ ବହୁ ଅଭିଯୋଗ, ସମ୍ବାଦପତ୍ରରେ ପ୍ରକାଶ ପାଉଛି । କିଏ ଦେଶର ସମ୍ପତ୍ତି ଲୁଟ୍ କରୁଛି ତ, କିଏ ପ୍ରଜାଙ୍କ ମଙ୍ଗଳ ପାଇଁ ମଞ୍ଜୁର ଅର୍ଥକୁ ଖାଇଯାଉଛି । ପ୍ରଜା ଦିନକୁ ଦି'ଓଳି ପେଟକୁ ଦାନା ପାଉନି ତ, କେଉଁଠି ବହୁମୂଲ୍ୟ ଖାଦ୍ୟପଦାର୍ଥ ଖାଇ ବା ନ ଖାଇ ନର୍ଦ୍ଦମାକୁ ଫିଙ୍ଗି ଦିଆଯାଉଛି ।

ବର୍ତ୍ତମାନ ସାରା ପୃଥିବୀରେ ଏଇ ପ୍ରକାରର ଅରାଜକତାର ଦୃଶ୍ୟ ପରିଲକ୍ଷିତ ହେଉଛି । ନା ଅଛି ଦୟା ନା ଅଛି ଧର୍ମ, ନା ଅଛି ପୁଣ୍ୟ । ସବୁଆଡ଼େ ବିଶୃଙ୍ଖଳାମାନ ବିରାଜମାନ କରୁଛି । କଳି ହଟିଯିବାକୁ ବସିଲା ବେଳେ, ଏଇ ମାନବ ସମାଜର ସବୁ ଦିଗରୁ ଅଧୋଗତି ହେବାର ଲାଗୁଛି । ମଣିଷ ଯେଉଁ କମ୍ପ୍ୟୁଟର ତିଆରି କରିଥିଲା, ସେ ପୁଣି ଅଚଳ ହେବାକୁ ଯାଉଛି । ଯେଉଁ କଳକାରଖାନା ଗଢ଼ିଥିଲା, ସେ ପୁଣି ହେବ ଅଚଳ । ନା ମିଳିବ ତେଲ ମୋବିଲ, ନା ମିଳିବ ପେଟ୍ରୋଲ ନା ପାଇବେ ବିଜୁଳି । ନା ଚାଳିବ ଗାଡ଼ି ନା ମଟର ନା ବ୍ୟୋମଜାନ । ଆଗକୁ ସେ ସମୟଟି ଆସୁଛି, ଯେପରି ଲୋକ ଗାଁ ଗଣ୍ଡାରେ ଅଛନ୍ତି, ତାଙ୍କୁ ଦି'ବେଳା ଅନ୍ନ ମିଳୁନି, ଠିକ୍ ସେଇ ରକମର ଅଭାବ, ଏ ସବୁ କ୍ଷେତ୍ରରେ ଲୋକେ ଦେଖିବେ ।

—ଏଠି ହୋଇବ ପ୍ରଭୁଙ୍କ ମାୟା । ସମୟ ଆସିଲେ ସମସ୍ତେ ବୁଝିବେ ଯେଉଁମାନେ ଆଜି ମାଳିକାକୁ ଅବିଶ୍ୱାସ ମଣୁଛନ୍ତି; ସେଇମାନେ ଶେଷକୁ ନିଜର ଭୁଲ୍ ଓ ନିଜର ଦୋଷ ନିଜେ ସୁଧାରି ନେବେ । ଅନୁତାପ କରି ବସିଲା ବେଳକୁ ନେଡ଼ିଗୁଡ଼ କହୁଣିକି ବୋହି ଯାଇଥିବ । ତେବେ କ'ଣ ହେବ ?—ସବୁ ଖାଲି ତା' ହୁତାଶରେ ଛଟପଟ ହେବେ । ଶେଷକୁ ନିରୂପାୟ ହୋଇ କେବଳ ନାରାୟଣଙ୍କୁ ଡାକିବେ । ସର୍ବେ ହୋଇଣ ଏକ ମୁଖ, ଡାକିବେ ନାରାୟଣ ରଖ ।

—ପ୍ରଭୁ ରଖିବେ କି ନ ରଖିବେ, ଏଇଟି ତାଙ୍କ ଉପରେ ନିର୍ଭର କରେ । ଯେଉଁମାନେ ସତ୍‌ପଥରେ ଥିବେ, ଧର୍ମଛଡ଼ା ହୋଇ ନଥିବେ, କେବଳ ସେହିମାନେ ହିଁ ପ୍ରଭୁଙ୍କର ଆଶୀର୍ବାଦ ଲାଭକରି, କୁଳକୁ ବିହନ ହେବେ । ଆଗତ ଅନନ୍ତଯୁଗରେ ସମସ୍ତ ସୁଖଶାନ୍ତି ପ୍ରାପ୍ତି ହେବେ ।

ପ୍ରତି ଯୁଗରେ ଧର୍ମ ସଂସ୍ଥାପନା ପାଇଁ ପ୍ରଭୁ ମାନବ ଶରୀରରେ ଆସି ଲୀଳାଖେଳା କରି ଯାଆନ୍ତି । ସମସ୍ତେ ତାଙ୍କୁ ଚିହ୍ନିପାରନ୍ତି ନାହିଁ । ଲୀଳାସାରି ଅନ୍ତର୍ଦ୍ଧାନ ହୋଇଗଲା ପରେ, ଲୋକେ ତାଙ୍କୁ ଭାବନ୍ତି ଓ ଚର୍ଚ୍ଚା କରି ବସନ୍ତି ।

**ଚର୍ଚ୍ଚମା**—ଏ କଳିଯୁଗର ଶେଷ ଅବତାର କଳ୍କୀ ରୂପେ ଜନ୍ମଲଭି ଆବିର୍ଭାବ ହୋଇଥିବା ପ୍ରଭୁ ଶ୍ରୀ ଅନନ୍ତକେଶରୀ ହେଉଛନ୍ତି ଶ୍ରୀ ଅରକ୍ଷିତ ଭଞ୍ଜ ସେ ନିଜକୁ ୫୫ ବର୍ଷ ଯାଏଁ ଗୁପତ ରଖିଥିଲେ, ଏଇ ୨୦୦୭ରେ ୫୬ ବର୍ଷରେ ପଦାର୍ପଣ କଲେ, ଶ୍ରୀ ନିରାକାର ତାଙ୍କ ଦେହରେ ବିଶ୍ରାମ କଲେ ଅର୍ଥାତ୍ ପ୍ରଭୁ ନିରାକାର ତାଙ୍କ ନରଦେହରେ ଲୀଳା କରୁଛନ୍ତି । ତାଙ୍କ ନିର୍ଦ୍ଦେଶ ମୁତାବକ ଆଜି ସେ ନିଜକୁ କଳ୍କୀ ଦେବ ବୋଲି ଘୋଷଣା କଲେ ।

## ଓଡ଼ିଶାର କେଉଁ ସ୍ଥାନରୁ ପ୍ରଥମେ କଳ୍କୀ ଲୀଳା ଆରମ୍ଭ ? ପର୍ଯ୍ୟାୟ କ୍ରମେ ଲୀଳାର ମୁଖ୍ୟ ମୁଖ୍ୟ ସ୍ଥାନଗୁଡ଼ିକର ସଂକ୍ଷିପ୍ତ ଟିପ୍ପଣୀ ପ୍ରକାଶ କରାଗଲା—

ପ୍ରଥମ ପର୍ଯ୍ୟାୟରେ ଆଦ୍ୟ ଲୀଳା 'ଅମରାବତୀ' ଠାରେ ହେବ । ଏଠାରୁ ନେମାଳ, ତା'ପରେ ପାରାଦ୍ବୀପ, ତା'ପରେ ଶାରଳା ମନ୍ଦିର ପଞ୍ଚକୋଶୀ ଅଞ୍ଚଳ, ତା'ପରେ ଛତିଆ, ତା'ପରେ କଟକ ଗଡ଼ଚଣ୍ଡୀ

ଅଞ୍ଚଳ, ତା'ପରେ ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିରାଞ୍ଚଳ; ଖଣ୍ଡଗିରି, କେଦାରଗୌରୀ, ତା'ପରେ ଦାଣ୍ଡମୁକୁନ୍ଦ ପୁର ଓ ଶେଷରେ ଶ୍ରୀକ୍ଷେତ୍ର ପୁରୀଠାରେ ଲୀଳାଖେଳା ଅନୁଷ୍ଠିତ ହେବ ।

—ଦ୍ୱିତୀୟ ପର୍ଯ୍ୟାୟରେ ଚଉଦ୍ୱାର, ଯାଜପୁର ବିରଜା ମନ୍ଦିର ପାର୍ଶ୍ୱ, ଗୋହିରି ଟିକରା, ଆରଡ଼ି ଧାମ ଓ ଶେଷରେ ବେଦବ୍ୟାସ ରାଉରକେଲା ଅଞ୍ଚଳ ।

—ତୃତୀୟ ପର୍ଯ୍ୟାୟରେ ଗଞ୍ଜାମ ଜିଲ୍ଲାର ମହେନ୍ଦ୍ରଗିରି ଅଞ୍ଚଳ

—ଚତୁର୍ଥ ପର୍ଯ୍ୟାୟରେ କାଶୀ, ମଥୁରା, ଗୋପ ଓ ବୃନ୍ଦା... ଅଞ୍ଚଳ, ତା'ପରେ ରାମେଶ୍ୱର ସେତୁବନ୍ଧ ଅଞ୍ଚଳ ଓ ଶେଷରେ କଲି... ସିଆଳଦାଠାରେ ମହାଯଜ୍ଞ ଅନୁଷ୍ଠିତ କରେଇ ବିଦେଶ ଯାତ୍ରା ... ଏତଦ୍‌ବ୍ୟତୀତ ସମୟକୁ ଦେଖି ସ୍ୱତନ୍ତ୍ର ଇଚ୍ଛାଧୀନ ସ୍ଥାନମାନ ବଛାଯି... ଏଇ ଲୀଳାମାନ କରିବେ ଶ୍ରୀ ଅରକ୍ଷିତ ଭଞ୍ଜ ଅର୍ଥାତ୍ ଯୁଗାବତାର କଳ୍କୀ ପ୍ରଭୁ ଶ୍ରୀ ଅନନ୍ତ କେଶରୀ ଦେବର୍ଷି ନାରଦ କହିଲେ ଆଜି ଏ ଗୁପ୍ତକ... ଖୋଲିକରି । ବହୁ କାଳୁଁ ଏ କଥା ଥିଲା ଗୁପତ । ଆଜି ସମୟ ପହଞ୍ଚିବାରୁ ଏହା ହେଲା ପ୍ରକାଶିତ । ଏ ପୃଥିବୀର ସମସ୍ତ ମୁନି ଋଷି ସାଧୁ ସନ୍ଥ ଓ ଭକ୍ତ ଯାଙ୍କ ପାଖକୁ ଆସ । ସମସ୍ତ ଦେବାଦେବୀଙ୍କ ତରଫରୁ ମୁଁ ନାରଦ କହୁଛି କଳ୍କୀ ଲୀଳା ଦେଖିବ ଅବଶ୍ୟ ।

